# ବଗୁଲୀର ଯାତ୍ରାଦେଖା

(ଶିଶୁଗଳ୍ପ)

*ଲେଖିକା :* **ଅରୁଣା ସାମନ୍ତରାୟ**
ମଠସାହି, ତୁଳସୀପୁର, କଟକ-୭୫୩୦୦୮
ଦୂରଭାଷ : ୯୩୩୮୦୯୦୩୮୩

*ପ୍ରକାଶକ :* **ସାଥୀ ପ୍ରକାଶନ**

ବିଜୟ କୁମାର ପ୍ରଧାନ, ସାଥୀ ଅଫ୍‌ସେଟ୍, କଟକ
ପ୍ରଥମ ସଂସ୍କରଣ ୨୦୧୮, ମୂଲ୍ୟ : ଟ.୭୦/-

---

# BAGULIRA YATRA DEKHA

**by: Aruna Samantaray**
Mathosahi, Tulasipur, Cuttack-753008
Ph.: 9338090383

**Publisher : SATHI PRAKASHIN**
**ISBN NO. : 81-86355-54-5**

**Cover Design : Bijay Kumar Pradhan**
**Printed at : Sathi Offset, Cuttack-1**
**First Edition : 2018, Price : Rs. 70 /-**

*Digitized by srujanika@gmail.com*

## ଉତ୍ସର୍ଗ

ଯେଉଁ ଶିଶୁ, କିଶୋରମାନଙ୍କ ମନୋରଞ୍ଜନ, ଶିକ୍ଷା ପାଇଁ ଗଳ୍ପଗୁଡ଼ିକ ଲେଖା ଯାଇଛି ସେହିମାନଙ୍କ ଉଦ୍ଦେଶ୍ୟରେ...

*ସ୍ନେହର*

*ଅରୁଣା ସାମନ୍ତରାୟ*

*Digitized by srujanika@gmail.com*

# ନିଜକଥା

ବର୍ତ୍ତମାନର ଶିଶୁ / କିଶୋର ହେଉଛନ୍ତି ଆମର ସୁନେଲି ଭବିଷ୍ୟତ । ତାଙ୍କଦ୍ୱାରା ଦେଶର, ବିଶ୍ୱର ଉନ୍ନତିସାଧନ ହୋଇପାରିବ ବୋଲି ଆମର ଦୃଢ଼ ବିଶ୍ୱାସ । ଏଥିପାଇଁ ସାଧନା ଆବଶ୍ୟକ । ନିଜକୁ ଆଦର୍ଶ ଭାବରେ ଗଢ଼ି ତୋଳିବା ଏକ ସାଧନା, ଯାହା ପିଲାମାନେ ଛୋଟବେଳରୁ ଅଭ୍ୟାସ ବଳରେ ହାସଲ କରିପାରନ୍ତି । ଏହି ପୁସ୍ତକଟିରେ ଗଳ୍ପ ମାଧ୍ୟମରେ ପିଲାଙ୍କୁ କିଛି ଶିକ୍ଷା ଦେବାର ଉଦ୍ୟମ କରାଯାଇଛି । ପରିଶ୍ରମ, ନିଷ୍ଠା, କର୍ତ୍ତବ୍ୟବୋଧ, ସମୟର ସଦ୍‌ବ୍ୟବହାର ଇତ୍ୟାଦି ଅନେକ ଆଦର୍ଶ ଗୁଣାବଳୀର ଉପସ୍ଥାପନା ଗଳ୍ପଗୁଡ଼ିକରେ କରାଯାଇଛି ।

ମାଆ, ମାତୃଭୂମି, ମାତୃଭାଷା - ଏମାନେ ଆମର ଚିରବନ୍ଦନୀୟା । ଆମେ ସର୍ବଦା ମନେରଖିବା ଉଚିତ ଯେ ଆମର ମାତୃଭାଷା ପ୍ରତି ସମ୍ମାନ ରହିଲେ ଜାତିର ଉନ୍ନତି ହୋଇପାରିବ ।

ଯେଉଁମାନଙ୍କ ପ୍ରେରଣାରେ ମୁଁ ପୁସ୍ତକଟିକୁ ରଚନା କରିବାରେ ସକ୍ଷମ ହୋଇଛି ସେମାନେ ହେଲେ - ମୋର ପିତା ଶ୍ରୀ ଅଭୟ ସାମନ୍ତରାୟ, ସ୍ୱାମୀ ଶ୍ରୀ ରବୀନ୍ଦ୍ର କୁମାର ମିଶ୍ର, ଦୁଇ ଝିଅ ଅର୍ଚ୍ଚନା ଓ ଅସୀମା, ଅତ୍ୟନ୍ତ ଶୁଭେଚ୍ଛୁ ଶ୍ରୀ ସୁକୁମାର ସାମଲ, ଅନୁଜପ୍ରତିମ ଶ୍ରୀ ଦିବ୍ୟଜ୍ୟୋତି ପାଣି, ପରମ ହିତୈଷିଣୀ ଶ୍ରୀମତୀ ଜ୍ୟୋତ୍ସ୍ନାବାଳା ପାଣି । ସେମାନଙ୍କର ଶ୍ରଦ୍ଧା, ସଦିଚ୍ଛା ପାଇଁ ତାଙ୍କ ନିକଟରେ ମୁଁ ଚିରକୃତଜ୍ଞ ।

ସର୍ବଶେଷରେ 'ସାଥୀ ପ୍ରକାଶନ'ର ପ୍ରକାଶକ ଶ୍ରୀ ଜନୁପ କୁମାର ବେହେରାଙ୍କର ଆନ୍ତରିକ ପ୍ରଚେଷ୍ଟା ଦ୍ୱାରା ପୁସ୍ତକଟି ଲୋକଲୋଚନକୁ ଆସିପାରି ଥିବାରୁ ତାଙ୍କୁ ମୋର କୃତଜ୍ଞତା ଜଣାଉଛି ।

ପୁସ୍ତକଟିରେ ପ୍ରକାଶିତ ଗଳ୍ପଗୁଡ଼ିକ ଆଗ୍ରହୀ ପାଠକ ପାଠିକା, ବିଶେଷକରି ଶିଶୁ କିଶୋରଙ୍କ ପ୍ରାଣରେ ଆନନ୍ଦ ଉଦ୍ରେକ କରିପାରିଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ଅନୁଭବ କରିବି । ପ୍ରଭୁ ଜଗନ୍ନାଥ ସମସ୍ତଙ୍କୁ ଆନନ୍ଦରେ ରଖନ୍ତୁ ।

ଅରୁଣା ସାମନ୍ତରାୟ

Digitized by srujanika@gmail.com

# ଗଳ୍ପକ୍ରମ



Digitized by srujanika@gmail.com

Digitized by srujanika@gmail.com

# କୃତଜ୍ଞତା

ଗୋଟିଏ ନଗରରେ ଦୁଇଜଣ ବ୍ୟବସାୟୀ ଥିଲେ । ଜଣେ ବ୍ୟବସାୟୀ ତାଙ୍କର ନିଷ୍ଠା ଓ ସଚ୍ଚୋଟତା ଯୋଗୁଁ ବହୁତ ଉନ୍ନତି କରିଥିଲେ । ଲୋକମାନଙ୍କର ବିଶ୍ୱାସଭାଜନ ହୋଇଥିଲେ । ଅନ୍ୟ ବ୍ୟବସାୟୀଜଣକ ଲୋକଙ୍କୁ ବହୁତ ଠକୁଥିବାରୁ ଲୋକମାନେ ତାଙ୍କପ୍ରତି ବିରକ୍ତିଭାବ ରଖିଥିଲେ । ତେଣୁ ସେ ବ୍ୟବସାୟରେ ବିଶେଷ ଉନ୍ନତି କରିପାରୁ ନଥିଲେ । ଖାଲି ସାଧୁ ବ୍ୟବସାୟୀଙ୍କ ପ୍ରତି ଈର୍ଷାପରାୟଣ ହେଉଥିଲେ । ଉଭୟଙ୍କର ଗୋଟିଏ ଲେଖାଏ ପୁତ୍ର ଥିଲେ । ସଚ୍ଚୋଟ ବ୍ୟବସାୟୀଙ୍କ ପୁତ୍ର ହେଉଛି ସିଦ୍ଧାର୍ଥ ଏବଂ ଠକ ବ୍ୟବସାୟୀଙ୍କ ପୁତ୍ର ବିରଞ୍ଚି । ଉଭୟ ପ୍ରାୟ ସମବୟସ୍କ ଥିବାରୁ ବନ୍ଧୁ ଥିଲେ । ଦିନେ ସିଦ୍ଧାର୍ଥ ବିଚାର କଲା ସେ ବିଭିନ୍ନ ନଗର ଗ୍ରାମ ଭ୍ରମଣକରି କିଛି ଅଭିଜ୍ଞତା ଅର୍ଜନ କରିବ । ତା'ର ଏହି ଅଭିଳାଷଟି ସେ ତା' ବାପାଙ୍କୁ ଜଣାଇଲା । ତା' ପିତା ପୁତ୍ରର ଏପରି ଇଚ୍ଛାରେ ବାଧା ଦେଲେ ନାହିଁ । ନିଜର ପୋଷାକପତ୍ର କିଛିଦିନର ଖାଦ୍ୟ ଚଳିବା ନିମନ୍ତେ ଅର୍ଥ ସଙ୍ଗରେ ଧରି ସିଦ୍ଧାର୍ଥ ନିଜର ଯାତ୍ରା ଆରମ୍ଭକଲା ।

ସିଦ୍ଧାର୍ଥର ଯାତ୍ରା ବିଷୟରେ ବିରଞ୍ଚି କେଉଁଠୁ ଖବର ସଂଗ୍ରହ କରି ନେଇଥାଏ । ସେ ବାଟ ଜଗି ରହିଥାଏ ସିଦ୍ଧାର୍ଥର । ସିଦ୍ଧାର୍ଥ ଯାଉଯାଉ ଦେଖିଲା ବିରଞ୍ଚି ଅପେକ୍ଷା କରିଛି । ବିରଞ୍ଚି ତାକୁ ଅଟକାଇ ସବୁ ତଥ୍ୟ ସଂଗ୍ରହ କଲା ଓ ତା' ସହିତ କିଛିବାଟ ଯିବ ବୋଲି ଜଣାଇଲା । ବାଟରେ ତା'ର କାମସାରି ସେ ଫେରିଆସିବ, ସିଦ୍ଧାର୍ଥ ନିଜ ବାଟରେ ଯିବ, ଏଇ କଥା ହେଲା । ସିଦ୍ଧାର୍ଥ ଆନନ୍ଦରେ ବିରଞ୍ଚିକୁ ସଙ୍ଗରେ ଧରି ଚାଲିଲା । ରାତି ହୋଇଗଲା । ଦୁଇ ବନ୍ଧୁ ଗୋଟିଏ



Digitized by srujanika@gmail.com

ପାନ୍ଥଶାଳାରେ ରାତ୍ରିଟି କଟାଇବେ ଭାବି ନିକଟସ୍ଥ ପାନ୍ଥଶାଳାକୁ ଗଲେ । ବିରଞ୍ଚି ସିଦ୍ଧାର୍ଥଙ୍କୁ ମୁହଁରେ ଭଲ ବ୍ୟବହାର କଲେ ମଧ୍ୟ ଭିତରେ ଈର୍ଷାରେ କୁହୁଳୁ ଥାଏ । ସେ ନିଜ ସାଙ୍ଗରେ ଏକପ୍ରକାର ଚୂର୍ଣ୍ଣ ନେଇଥାଏ ଯାହାର ପ୍ରଭାବରେ ମଣିଷ ଅଚେତ ହୋଇପଡ଼ିବ । ରାତିରେ ଖାଇବା ଭିତରେ ସେ କୌଶଳରେ ସିଦ୍ଧାର୍ଥର ଖାଦ୍ୟରେ ସେହି ଚୂର୍ଣ୍ଣ ମିଶାଇ ଦେଲା । ବିରଞ୍ଚି ପୂର୍ବରୁ ସିଦ୍ଧାର୍ଥକୁ କହି ଦେଇଥାଏ ଯେ ସେ ସକାଳୁ ଉଠି ତା' କାମରେ ଯିବ । ଖାଦ୍ୟ ଖାଇସାରି ଦୁଇବନ୍ଧୁ ଶୟନ କଲେ । ସିଦ୍ଧାର୍ଥର ନିଦ ସକାଳୁ ଭାଙ୍ଗିଲା ନାହିଁ । ଚୂର୍ଣ୍ଣର ପ୍ରଭାବରେ ସେ ଅଚେତ ହୋଇପଡ଼ିଥିଲା । ବିରଞ୍ଚି ସିଦ୍ଧାର୍ଥର ସମସ୍ତ ଧନ ନେଇ ଆନନ୍ଦ ମନରେ ଘରକୁ ଫେରିଲା ।

ସିଦ୍ଧାର୍ଥର ଦୁଇଦିନ ପରେ ଚେତା ଫେରିଲା । ସେ ଦେଖିଲା ତା' ଧନ କିଏ ଅପହରଣ କରିନେଇଛି । ଇଏ ବିରଞ୍ଚିର କାମ ବୋଲି ଜାଣିପାରିଲା । ସେଥିପାଇଁ ଦୁଃଖିତ ହେଲା । ତଥାପି ଧୈର୍ଯ୍ୟଧରି ପୁଣି ଯାତ୍ରାରେ ବାହାରିଲା । ପଥରେ ଜଣେ ସାଧୁଙ୍କ ଆଶ୍ରମ ପଡ଼ିଲା । ସେ ସେଠାରେ ପହଞ୍ଚି ତାଙ୍କର କିଛି ସେବା କରିବାର ଅନୁମତି ଲୋଡ଼ିଲା । ଯୁବକଟିର ଆଗ୍ରହରେ ସାଧୁ ତାକୁ ନିଜର





Digitized by srujanika@gmail.com

ସେବା କରିବାର ଅନୁମତି ଦେଲେ । ସିଦ୍ଧାର୍ଥ ଯେଉଁ ସମୟରେ ସାଧୁଙ୍କ ଆଶ୍ରମରେ ଥିଲା ସେ ରାଜ୍ୟର ରାଜା ସେହି ସମୟରେ ସାଧୁଙ୍କ ନିକଟକୁ ଆସିଥିଲେ । ସେ ତାଙ୍କର ଧର୍ମପରାୟଣା କନ୍ୟା ନିମନ୍ତେ ଏକ ସତ୍ପାତ୍ରର ସନ୍ଧାନରେ ଥିବା କଥା ସାଧୁଙ୍କୁ ଜଣାଇଲେ । ସାଧୁ ତାଙ୍କୁ ସିଦ୍ଧାର୍ଥକୁ ଦେଖାଇ ଦେଲେ । ସିଦ୍ଧାର୍ଥର ରୂପ ଦେଖି ଓ ସାଧୁଙ୍କ ଠାରୁ ତା'ର ଗୁଣକଥା ଜାଣି ରାଜା ତାକୁ ନିଜର ଜାମାତା ରୂପେ ଗ୍ରହଣକଲେ ।

ବିରଞ୍ଚି ସିଦ୍ଧାର୍ଥର ଧନ ଅପହରଣ କରି ଫେରିବା ବାଟରେ ଜଙ୍ଗଲରେ ଡକାୟତଙ୍କ ହାବୁଡ଼ରେ ପଡ଼ିଲା । ସେମାନେ ତା'ଠାରୁ ସବୁ ଧନ ଛଡ଼ାଇ ନେଇଗଲେ । ଇଆଡ଼େ ଘରେ ପହଞ୍ଚିବାର ଦୁଇଦିନ ଭିତରେ ତା' ବାପାଙ୍କର ଅକାଳ ଦେହାନ୍ତ ହୋଇଗଲା । ବ୍ୟବସାୟ ପ୍ରାୟ ବୁଡ଼ିବା ଅବସ୍ଥାରେ ରହିଥିଲା । ବିରଞ୍ଚି ଅଭାବରେ ଛଟପଟ ହେବାରେ ଲାଗିଲା ସିଦ୍ଧାର୍ଥର ବିବାହ ରାଜକନ୍ୟାଙ୍କ ସହିତ ହେବା ପରେ ସେ ରାଜ୍ୟର ରାଜା ହେଲା । ଥରେ ରାଜରାସ୍ତାରେ ଯାଉଯାଉ ବିରଞ୍ଚିକୁ ଦେଖି ସେ ଚିହ୍ନି ପାରିଲା ଓ ତା' ବିଷୟରେ ଖବର ସଂଗ୍ରହ କଲା । ତା'ର ଦୁରବସ୍ଥା କଥା ଜାଣିଲା ପରେ ସେ ରାଜକର୍ମଚାରୀଙ୍କ ଦ୍ୱାରା ତା' ପାଇଁ ପ୍ରଚୁର ଧନର ବ୍ୟବସ୍ଥା କରିଦେଲା ଯେପରି କି ସେ ବ୍ୟବସାୟ ଆରମ୍ଭ କରିପାରିବ । ସେତେବେଳକୁ ବିରଞ୍ଚିର ମନ ପରିବର୍ତ୍ତନ ହୋଇ ସାରିଥିଲା । ସେ ଜାଣିଲା ଯେ ଯେଉଁ ବନ୍ଧୁ ପ୍ରତି ସେ ନିଷ୍ଠୁର କପଟତା ଦେଖାଇ ଥିଲା ଆଚରଣ କରିଥିଲା ଆଜି ସେଇ ତାକୁ ସାହାଯ୍ୟ କଲା । ବନ୍ଧୁ ପ୍ରତି କୃତଜ୍ଞତାରେ ତା' ମୁଣ୍ଡ ନଇଁଗଲା । ଚକ୍ଷୁ ଛଳଛଳ ହୋଇଗଲା । ସେ ସିଦ୍ଧାର୍ଥ ନିକଟକୁ ଯାଇ ନିଜର କୃତକର୍ମ ପାଇଁ କ୍ଷମା ମାଗିଲା ।





Digitized by srujanika@gmail.com

# ସଦ୍‌ଜ୍ଞାନ

ଟୁଟୁ ଓ ମିଟୁ ଦୁଇଭାଇ । ଟୁଟୁ ମିଟୁ ଠାରୁ ଦୁଇବର୍ଷ ବୟସରେ ବଡ଼ । ଟୁଟୁ ପଢ଼େ ସପ୍ତମ ଶ୍ରେଣୀରେ । ମିଟୁ ପଢ଼େ ପଞ୍ଚମ ଶ୍ରେଣୀରେ । ଟୁଟୁ ବଡ଼ଭାଇ ବୋଲି ମିଟୁ ପ୍ରତି ତାହାର ଦାୟିତ୍ୱ ଅଛି - ଏକଥା ଟୁଟୁ ଭାବିଥାଏ । ଦୁଷ୍ଟ ହେଲେ ସାନଭାଇକୁ ଆକଟ କରିବାକୁ ଚେଷ୍ଟାକରେ । ହେଲେ ମିଟୁ ବଡ଼ଭାଇକୁ ତିଳେହେଲେ ଖାତିର କରେନାହିଁ । ମନଇଚ୍ଛା ବୁଲେ । ଠିକ୍ ସମୟରେ ପାଠପଢ଼େ ନାହିଁ । ରାଗିଗଲେ ଭାଇ ସହିତ କଳିଝଗଡ଼ା କରେ । ବେଳେବେଳେ ଗୋଟାଏ ଦୁଇଟା ମାଡ଼ ମଧ୍ୟ ବସାଇ ଦିଏ । ଟୁଟୁ ତା'ର ଗାଳିମାଡ଼ ସହି ରହିଥାଏ । ତା'ର ଆଖି ଛଳଛଳ ହୋଇଯାଏ । ହେଲେ ବାପା ମାଆଙ୍କୁ କହିବା ପାଇଁ ତା'ର ଇଚ୍ଛା





Digitized by srujanika@gmail.com



ହୁଏନାହିଁ । ଏତେସମୟ ପଢ଼ିପଢ଼ି ତା'ର ପାଠ ମନେ ରହେନାହିଁ । ସେ ଶ୍ରେଣୀରେ ସାଧାରଣ ଭାବେ ନମ୍ବର ରଖେ । ଠିକ୍ ପରୀକ୍ଷା ସମୟରେ କେମିତି କେଜାଣି କିଛି ହେଲେ ମନେପଡ଼େ ନାହିଁ । ସବୁ ଭୁଲିଯାଏ । ହେଲେ ମିଟୁ ଅଧିକାଂଶ ସମୟ ସାଙ୍ଗସାଥୀ ଧରି ବୁଲିବା, ଟି.ଭି. ଦେଖିବା, ଭଲମନ୍ଦ ଜିନିଷ ଖାଇବାରେ କଟାଇ ଦିଏ । ସେଥିରେ ସେ ଶ୍ରେଣୀରେ ପ୍ରଥମ ହୁଏ । ସେଥିପାଇଁ ବାପାମାଆ ମିଟୁକୁ ବେଶି ଭଲପାଆନ୍ତି । ତା'ର ଦୁଷ୍ଟାମୀ ପ୍ରତି ନଜର ରଖନ୍ତି ନାହିଁ । ଟୁଟୁ ସେମାନଙ୍କର ବାଧ୍ୟହୋଇ ସବୁକଥା ଶୁଣେ । ଯାହା କାମ ବରାଦ କଲେ ସାଙ୍ଗେସାଙ୍ଗେ କରିଦିଏ । ବାପାମାଆଙ୍କର ସ୍ନେହ ପାଇବାକୁ ବହୁତ ଚେଷ୍ଟାକରେ । ପରୀକ୍ଷା ଆସିଲା ବେଳକୁ ତା'ର ଛାନିଆ ପଶିଯାଏ । ତା' ପ୍ରତି ବାପାମାଆଙ୍କର ବିରକ୍ତି ତାକୁ ଆହୁରି କଷ୍ଟଦିଏ । ସେମାନେ ମିଟୁକୁ ଅଧିକ ଗେହ୍ଲା କରୁଥିବାରୁ ସେ ଭାଇକୁ ମାନିବା ଦୂରେ ଥାଉ ବାପାମାଆଙ୍କୁ ମଧ୍ୟ ମାନିଲା ନାହିଁ । ତଥାପି ବାପାମାଆଙ୍କର ମନରେ ଏଥିପାଇଁ ଦୁଃଖ ନଥାଏ । ଭାବନ୍ତି ପିଲାଲୋକ ଦୁଷ୍ଟ ହେଉଛି, ବଡ଼ ହୋଇଗଲେ ବଳେ ବୁଝିଯିବ । କିନ୍ତୁ ମିଟୁ ଯେତେ ବଡ଼ ହେବାରେ ଲାଗିଲା ତା'ର ଦୁଷ୍ଟାମୀ ସେତେ ଅଧିକ ହେବାରେ ଲାଗିଲା ।



Digitized by srujanika@gmail.com

ଦିନେ ସାଙ୍ଗମେଳରେ ମିଟୁ ନଈକୁ ଗାଧୋଇବା ପାଇଁ ବାହାରିଲା । ମାଆ ପ୍ରଥମେ ମନା କରୁଥିଲେ । କିନ୍ତୁ ମିଟୁ ଏକା ଜିଦ୍ କରିବସିଲା । ନଈକୁ ଗାଧୋଇବାକୁ ନ ଗଲେ ସେ ଆଜି ଖାଇବ ନାହିଁ । ତା' ଜିଦ୍ ନିକଟରେ ମାଆ ହାର ମାନିଲେ । ପାଞ୍ଚ ଛଅଜଣ ସାଙ୍ଗଙ୍କ ସହିତ ମିଟୁ ନଈ ପାଖରେ ପହଞ୍ଚିଲା । ସେମାନେ ପ୍ରଥମେ କୂଳ ପାଖାପାଖି ଥାଇ ଗାଧଉ ଥିଲେ । ପାଣି ଫିଙ୍ଗାଫିଙ୍ଗି କରି ଖେଳୁଥିଲେ । ତା' ଭିତରେ ଚାରିଜଣ ପିଲା ପହଁରା ଜାଣିଥିଲେ । ସେମାନେ ପହଁରି ପହଁରି ଟିକେ ଦୂରକୁ ଚାଲିଗଲେ । ମିଟୁର ଗୋଟିଏ ସାଙ୍ଗ ଟିକେ ଡରୁଆ । ସେ ପହଁରା ଜାଣି ନଥିଲା । ଚୁପ୍ ହୋଇ କୂଳ ନିକଟରେ ରହିଲା । ମିଟୁ ବାହାଦୁରି ଦେଖାଇବା ପାଇଁ ପହଁରା ଜାଣି ନଥିଲେ ବି ହାତଗୋଡ଼ ପିଟାପିଟି କରି ଦୂରକୁ ଚାଲିଗଲା । ସେଠାରେ ପାଣି ଗଭୀର । ହାତଗୋଡ଼ ନ ପାଇ ଉବୁଟୁବୁ ହେଲା । ଡରୁଆ ସାଙ୍ଗଟି ତା' ଅବସ୍ଥା ଦେଖି ଖାଲି ପାଟି କରୁଥାଏ । ଛାନିଆରେ ତା' ଦେହ କମ୍ପୁଥାଏ । ବାକି ଚାରିଜଣ ନିଜନିଜ ଚେଷ୍ଟାକଲେ ବି ମିଟୁ ଖାଲି ତାଙ୍କ ହାତରୁ ଖସି ଯାଉଥାଏ । ସେମାନେ ନିଜ ଜୀବନ ବଞ୍ଚାଇବାକୁ ପହଁରି ପହଁରି କୂଳକୁ ଚାଲି ଆସିଲେ । ଡରୁଆ ସାଙ୍ଗଟି ଦୈବାତ୍ ପାଣିରୁ ଉଠି ଦୌଡ଼ିଯାଇ ମିଟୁ ଘରେ





Digitized by srujanika@gmail.com

ଖବର ଦେଲା । ଘରେ ବାପା ନଥିଲେ ମାଆ ଓ ଟୁଟୁ ଥିଲେ । ମାଆ କାନ୍ଦିକାନ୍ଦି ନଈ ନିକଟକୁ ଦୌଡ଼ିଦୌଡ଼ି ଆସିଲେ । ତାଙ୍କ ସହିତ ଟୁଟୁ ମଧ୍ୟ ନଈକୂଳକୁ ଆସିଲା । ଟୁଟୁ ପହଁରା ଜାଣିଥିଲା । ହେଲେ ମିଟୁ କାହିଁ ? ଦିଶୁ ନାହିଁ ତ ! ଟୁଟୁର ମନ ଦୁଃଖରେ ଅସ୍ଥିର ହୋଇଉଠିଲା । ଭାଗ୍ୟକୁ ମିଟୁର ମୁଣ୍ଡ ସାମାନ୍ୟ ଉଠିଲା ପରି ହୋଇଗଲା । ଟୁଟୁ ନଈକୁ ଡେଇଁପଡ଼ିଲା ଓ ପହଁରି ପହଁରି ଯାଇ ମିଟୁର ଚୁଟିକୁ ଧରି ପକାଇଲା । ତା' ପରେ ତା' ହାତକୁ ଅଣ୍ଟାଳି କରି ଧରିଲା ଏବଂ ଜୋର୍ ଲଗାଇ କୂଳ ଆଡ଼କୁ ଟାଣିଲା । ସୁଅ ତାକୁ ଠେଲି ଦେଉଥାଏ । ବହୁତ ବଳ ଖଟାଇ ସାହସର ସହିତ ଧୈର୍ଯ୍ୟଧରି ଟୁଟୁ ମିଟୁକୁ ଟାଣୁ ଥାଏ । ନିଜେ ବୁଡ଼ି ଯାଇ ପୁଣି ଉଠୁଥାଏ । ଅନେକ ସମୟ ପର୍ଯ୍ୟନ୍ତ ବିପଦକୁ ସାମ୍ନା କରି ଶେଷରେ ଟୁଟୁ ସାନଭାଇକୁ ଟାଣିଟାଣି ଆଣି କୂଳରେ ପହଞ୍ଚାଇଲା । କୂଳକୁ ଆସି ନିଜେ ଅଚେତ ହୋଇଗଲା । ଅନେକ ଲୋକ ସେତେବେଳକୁ କୂଳରେ ଠିଆ ହୋଇଥିଲେ । ଦୁଇଜଣ ସେଠାରେ ସାଙ୍ଗେସାଙ୍ଗେ ଦୁଇଭାଇଙ୍କୁ ଉଠାଇ ଆଣିଲେ । ପ୍ରାଥମିକ ଚିକିତ୍ସା ଅନୁସାରେ ପେଟ ଚିପାଚିପି କରି ପାଣି ବାହାର କରିବାରେ ଲାଗିଲେ । ଟୁଟୁର ଚେତା ଆସିବା ମାତ୍ରେ ମିଟୁ କାହିଁ, ମିଟୁ କୁଆଡ଼େ ଗଲା ବୋଲି ପଚାରିଲା । ଲୁହ ଛଳଛଳ ଆଖିରେ ମାଆ ତାକୁ କୁଣ୍ଢାଇ ପକାଇଲେ । ଦେହ, ମୁଣ୍ଡ ଆଉଁଷି ଦେଲେ । କହିଲେ ତୁ ବ୍ୟସ୍ତ ହୋନାରେ ବାପା, ତୋ ସାନଭାଇ ଅଛି । ଏହି ଦେଖ, ସେଠି ବସିଛି । ଟୁଟୁ ମୁହଁରେ ହସ ଫୁଟି ଉଠିଲା । ସାନଭାଇକୁ ଦେଖି ତା' ମନ ଆନନ୍ଦରେ ପୂରିଗଲା । ମିଟୁ ଆସି ଟୁଟୁକୁ 'ଭାଇ ଭାଇ' କହି ତା' ଦେହକୁ ଲାଗି ବସିପଡ଼ିଲା । ଟୁଟୁ ମିଟୁ ଅନେକ ସମୟ ଧରି ପରସ୍ପରକୁ କୋଳେଇ ଧରିଲେ । ପରେ ସେମାନେ ଘରକୁ ଆସିଲେ । ବାପା ଯେତେବେଳେ ଘରକୁ ଫେରିଲେ ମାଆ ତାଙ୍କୁ ସବୁକଥା କହିଲେ । ଟୁଟୁ ନିଜ ଜୀବନକୁ ବିପଦରେ ପକାଇ ସାନଭାଇକୁ ବଞ୍ଚାଇଥିବା ଜାଣିଲା ପରେ ତାଙ୍କ ଆଖିରେ ଲୁହ ଆସିଗଲା । ସେ ଟୁଟୁକୁ ଓ ମିଟୁକୁ ଏକାଠି ପାଖରେ ବସାଇଲେ । ମିଟୁକୁ କହିଲେ, 'ଦେଖେ ମିଟୁ, ତୋତେ ବଞ୍ଚାଇବା ପାଇଁ ଆଜି ଭାଇର ଜୀବନ ଯାଇଥାନ୍ତା । ଯାହାହେଉ ଭଗବାନଙ୍କ



Digitized by srujanika@gmail.com

ଦୟାରୁ ତୁମେ ଦୁହେଁ ଜୀବନ ନେଇ ଫେରିଲ । ଏବେ ଶପଥ କର, ସବୁବେଳେ ଭାଇ କଥା ମାନିବୁ । ତୋ ଜୀବନ ତା'ରି ଲାଗି ପୁଣି ଫେରିପାଇଲୁ । ସିଏ ନ ଥିଲେ ତୋତେ ଆଜି ଆମେ ଆଉ ପାଇ ନଥାନ୍ତୁ । 'ମିଟୁ ମୁଣ୍ଡପୋତି ହଁ ମାରିଲା । ଏବେ ବାପାମାଆଙ୍କ ସ୍ନେହ ଉଭୟଙ୍କ ପାଇଁ ସମାନ ହୋଇଗଲା । ମିଟୁର ସଦ୍‌ଜ୍ଞାନ ଉଦୟ ହେଲା । ସେ ଆଉ କାହାର ଅବାଧ ହେଲାନାହିଁ । ବାପା, ମାଆ, ଭାଇ ସମସ୍ତଙ୍କ କଥା ମାନି ଚଳିଲା । ଏବେ ଟୁଟୁର ଆନନ୍ଦର ସୀମା ନାହିଁ । ତା' ଆଦରର ସାନଭାଇଟି ସୁନାପିଲା ହୋଇଯାଇଛି । ଦୁଷ୍ଟପିଲାଙ୍କ ସହିତ ନ ମିଶି ଭଲପିଲାଙ୍କ ସାଙ୍ଗରେ ମିଶୁଛି । ଘରେ ସମସ୍ତଙ୍କୁ ମାନୁଛି । ବାପାମାଆ ମିଟୁକୁ ଯେମିତି ଗେହ୍ଲା କରୁଛନ୍ତି ତାକୁ ମଧ୍ୟ ସେମିତି ଗେହ୍ଲା କରୁଛନ୍ତି । ଏଥର ପରୀକ୍ଷାରେ ଟୁଟୁ ଆଗଥର ଅପେକ୍ଷା ଆହୁରି ଭଲ ନମ୍ବର ରଖିଲା । ବିଦ୍ୟାଳୟରେ ତାକୁ ଶିକ୍ଷକ ଶିକ୍ଷୟିତ୍ରୀ ପ୍ରଶଂସା କଲେ ଏବଂ ଆଗରୁ ଆହୁରି ଭଲ କରିବାକୁ ଉପଦେଶ ଦେଲେ ।





Digitized by srujanika@gmail.com

# ସ୍ନେହର ଆକର୍ଷଣ

କୁନୁ ତା' ବାପାମାଆଙ୍କର ଗୋଟିଏ ବୋଲି ପୁଅ ଥିଲା । ଭାରି ଗେଲବସରିଆ । ସମସ୍ତେ ତାକୁ ଆଖି ଆଗରେ ରଖୁଥିଲେ । ତାଙ୍କ ଘରେ ଗୋଟିଏ ଗାଈ ଥିଲା । ତା'ର ନାଆଁ ଥିଲା ସୁନା । ସେ ସଫା ଧଳାରଙ୍ଗର । ପୋଛାପୋଛି ହେଲା ପରି ଚିକ୍କଣ ହୋଇ ଦେଖାଯାଉଥାଏ । କୁନୁ ବହୁତ ଛୋଟ ଥିଲାବେଳେ ସୁନା ଛୋଟ ବାଛୁରୀ ଥିଲା । କୁନୁ ତାକୁ ଦେଖିଦେଖି ଖାଦ୍ୟ ଖାଉଥିଲା । ତାକୁ ଆଉଁଷି ଦେଉଥିଲା । ତା' ମୁହଁରେ, ଦେହରେ ହାତ ମାରିଦେଲେ ସେ କୁନୁ ଦେହରେ ଲେସି ହେଲା ପରି ମୁହଁ ଘଷୁଥିଲା । କୁନୁ ଖୁସିରେ କୁରୁଳି ଉଠୁଥିଲା । ତେଣୁ ସୁନା ତା'ର ପିଲାଦିନର ସାଙ୍ଗ । ଯାହା ଗୋଟିଏ ଭଲମନ୍ଦ କୁନୁ ପାଇଁ ଆସିଲେ ସେ ସେଥିରୁ କିଛି ନେଇ ସୁନାକୁ ଖୁଆଇ ଦିଏ । ବାପା ମା' ଦିହେଁ କୁନୁ ସହିତ ସୁନାର ବନ୍ଧୁତା ଦେଖି ଆନନ୍ଦିତ ହୁଅନ୍ତି । କୌଣସି କାରଣରୁ କୁନୁ ଅଝଟ ହେଲେ ତାକୁ ବୁଝାଇ ଦିଆଯାଏ, ଦେଖିଲୁ ସୁନାକୁ କେମିତି ଚୁପ୍‌ଚାପ୍ କଥା ମାନି ରହିଛି । ଯାହା ଦେଲେ ଖାଇ ଦେଉଛି । ଅବାଧ ହେଉନି । ତୁ ଯଦି ଏମିତି ଅବାଧ ହେଉ ତେବେ ସୁନା ଆଉ ତୋର ସାଙ୍ଗ ହେବନାହିଁ । ତୁ ଡାକିଲେ ଶୁଣିବ ନାହିଁ । କୁନୁର ଅଝଟପଣ ଥମିଯାଏ । ସତରେ ସୁନା ତା' ସାଙ୍ଗ ନ ହେଲେ ବଡ଼ ଅସୁବିଧା ହୋଇଯିବ । ଡାକିଦେଲା ମାତ୍ରେ ତା' ପାଖକୁ ଆଉ କିଏ ଆସିବ ଯେ ! ତା' ହାତରୁ ଆଉ ଘାସ ଖାଇବ ନାହିଁ ସୁନା । ବାସନ୍ତୀଖୁଡ଼ୀକୁ ସବୁଦିନ କଅଁଳିଆ ଘାସ ଆଣି ଦେବାକୁ କୁହାଯାଉଛି । ସେ ଆଣିଥିବା ଘାସକୁ କୁନୁ ସୁନାକୁ ଟିକେଟିକେ କରି ଖୁଆଏ । ଖାଉଖାଉ କୁନୁ ହାତକୁ ଚାଟି ଚାଟି ଦିଏ । କୁନୁର ମନ ଆନନ୍ଦରେ



Digitized by srujanika@gmail.com

ନାଚି ଉଠେ । ତାଙ୍କ ସ୍କୁଲ୍‌ରେ କ'ଣ ହେଲା ସବୁ ସୁନା ଆଗରେ କହେ । ସୁନା ଚୁପ୍ ହୋଇ ଶୁଣେ । ପ୍ରତିଦିନ ସ୍କୁଲ୍‌ରେ ଘଟିଥିବା ଘଟଣା, ସାଙ୍ଗସାଥୀଙ୍କ କଥା ଇତ୍ୟାଦି ଅନବରତ ଗପି ଚାଲେ ମୁନୁ । ଖୁସିହୁଏ ଯେ ତା'ର ସବୁକଥା କେହି ଶୁଣନ୍ତୁ ନ ଶୁଣନ୍ତୁ ସୁନା ତ ଶୁଣୁଛି । ଏହିପରି ଭାବରେ ମୁନୁ ଓ ସୁନାର ବନ୍ଧୁତ୍ୱ ବାସ୍ତବିକ ଦର୍ଶନୀୟ ।

କୁନୁ ବାପାଙ୍କର ଚାକିରିରେ ବଦଳି ଆଦେଶ ଆସିଗଲା । ମାସେ ଭିତରେ ସେ ସେହି ନୂଆ ସ୍ଥାନରେ ଯୋଗଦେବାର କଥା । ତାହାହିଁ ହେଲା । ପରେ ସ୍ତ୍ରୀ, ପିଲା ଏବଂ ଅନ୍ୟାନ୍ୟ ଜିନିଷପତ୍ର ନେଇ ଯିବାକୁ ସ୍ଥିର କରାଗଲା । କୁନୁର ସ୍କୁଲ୍‌ରୁ ଟ୍ରାନ୍ସଫର୍ ସାର୍ଟିଫିକେଟ୍ ଆଣିବାକୁ ହେବ । ତେବେ ସେ ସେଠାରେ ଯାଇ ନୂଆସ୍କୁଲ୍‌ରେ ନାମ ଲେଖାଇ ପାରିବ । ସୁନାକୁ କ'ଣ କରାଯିବ ସେ ଏକ ସମସ୍ୟା ହେଲା । କୁନୁ ଭାବିଥାଏ ସେମାନେ ଗଲାବେଳେ ସୁନା ସେମାନଙ୍କ ସହିତ ଯିବ । ବାପା ମାଆ ଭାବିଥାନ୍ତି ଯଦି କୌଣସି ଲୋକ ବୁଝନ୍ତେ ତେବେ ଏଇଠି ଗାଈଟିକୁ ବିକ୍ରି କରିଦେଇ ଯାଆନ୍ତେ । ମୁନୁକୁ ଭୁଲେଇ ଭାଲେଇ କହି ଦିଅନ୍ତେ । ହେଲେ ତାକୁ ଭୁଲେଇ କରି କ'ଣ କୁହାଯିବ କେମିତି କୁହାଯିବ । ସେଥିପାଇଁ ସେମାନେ ଘନଘନ ଚିନ୍ତା କରିବାରେ ଲାଗିଲେ । ଏଣେ ଗାଈକୁ ନେବାପାଇଁ ଲୋକ ଠିକ୍ କରିବାକୁ ବିଭିନ୍ନ ଲୋକଙ୍କୁ କୁହାଗଲା । କେତେ ଲୋକ କୁନୁ ମାଆଙ୍କ ସହିତ କଥାବାର୍ତ୍ତା କରିବା ଭିତରେ ଜଣେ ଲୋକକୁ ଠିକ୍ କରାହେଲା । ସେ ଲୋକଟି ଭଲଲୋକ ପରି ଦେଖାଯାଉଥିଲା । ସୁନାକୁ ନେଲେ ସେ ଠିକ୍ ଭାବରେ ଦେଖାଶୁଣା କରିବ ବୋଲି କୁନୁମାଆଙ୍କର ହୃଦ୍‌ବୋଧ ହେଲା ।

ସେମାନେ ଜିନିଷପତ୍ର ବନ୍ଧାବନ୍ଧି କରିବାରେ ଲାଗିଗଲେ । ଘର ଫାଙ୍କା ହୋଇଗଲା । କୁନୁ ଯାଇ ଗାଡ଼ିରେ ବସି ସାରିଲାଣି । ତା' ମାଆ ମଧ୍ୟ ତା' ସହିତ ବସିଛନ୍ତି । କଥା ହୋଇଛି ଯେଉଁ ଲୋକଟି ସୁନାକୁ ନେବ ସେ କୁନୁବାପାଙ୍କ ସହିତ ଦେଖା କରିବ । ସୁନା ଏମାନଙ୍କର ଯିବାକଥା ଦେଖି ବିଚଳିତ ହୋଇଯାଉଥାଏ । ଯେଉଁ ଲୋକ ନେବାକଥା ସେ ପହଞ୍ଚିଗଲା । ସୁନା ନିକଟରେ ପହଞ୍ଚି ତା' ଦେହରେ ହାତ ମାରିଲା । ତାକୁ ନେବାକଥା ଖୁସି ହୋଇ କହିଲା । କୁନୁର ବାପା ସୁନାକୁ ଦେଇଦେବା କଥା ସ୍ଥିର କରିଛନ୍ତି ସିନା ତାଙ୍କର ମନ



Digitized by srujanika@gmail.com



ମାନୁନି । ସୁନାକୁ ଋହିଁଲା ବେଳକୁ ତାଙ୍କ ପେଟ ଭିତର ଗୋଳେଇଘାଣ୍ଟି ହୋଇଗଲା ପରି ଲାଗୁଛି ।

କୁନୁର ବାପା ଗାଡ଼ିରେ ବସିବା ପାଇଁ ଯିବା ପୂର୍ବରୁ ପକେଟ୍‌ରୁ ଛୋଟ ପାନିଆଟିକୁ ବାହାର କରି ମୁଣ୍ଡରୁ ମାରୁ ଥାଆନ୍ତି । ପଛରୁ ଠେଲିଲା ପରି ଅନୁଭବ କଲେ । ବୁଲିପଡ଼ି ଋହିଁଲା ବେଳକୁ ସୁନା ଠିଆ ହୋଇଛି । ତା' ଦୁଇ ଆଖିରୁ ଧାରହୋଇ ଲୁହ ନିଗିଡ଼ି ଆସିଛି । ଏ ଦୃଶ୍ୟ ଦେଖି ସେ ସମ୍ଭାଳି ପାରିଲେ ନାହିଁ । ତାଙ୍କର ଆଖି ଛଳଛଳ ହୋଇଉଠିଲା । ଯେଉଁ ଲୋକ ସୁନାକୁ ନେବାଲାଗି ଆସିଥିଲେ ତାଙ୍କୁ କ୍ଷମାପ୍ରାର୍ଥନା କରି ବାଟଖର୍ଚ୍ଚ ଦେଇ ବିଦା କଲେ । ଟ୍ରକ୍‌ର ଡାଲାରେ ଖାଲିଥିବା ସ୍ଥାନରେ ସୁନାକୁ ରଖାଗଲା । ଖରା ନ କାଟିବା ପାଇଁ ତା' ଡାଲା ଉପରେ ପାଲ ଦିଆଗଲା । କୁନୁ, ତା'ର ବାପା ମାଆ, ସୁନା ସେମାନଙ୍କର ଗନ୍ତବ୍ୟସ୍ଥଳକୁ ଯାତ୍ରା କଲେ ।

ଦେଖିଲ ତ ପିଲେ, ପଶୁମାନଙ୍କର ମଧ୍ୟ ସ୍ନେହର ଆକର୍ଷଣ କିପରି ? ସ୍ନେହ ଆକର୍ଷଣରେ କେବଳ ମଣିଷ ନୁହେଁ ପଶୁପକ୍ଷୀ ମଧ୍ୟ ବଶ ହୁଅନ୍ତି ।





Digitized by srujanika@gmail.com

# ଶକ୍ତିଶାଳୀ କିଏ

ବିଷ୍ଣୁପୁରରେ ଜଣେ ଧନୀ ଜମିଦାର ଥିଲେ । ତାଙ୍କର ଧନସମ୍ପତ୍ତି ଅଚଳାଚଳ ଥିଲା ସତ ହେଲେ ମନରେ ଟିକିଏ ହେଲେ ଗର୍ବ ଅହଂକାର ନଥିଲା । ସେ ଖୋଲା ମନରେ ଦାନଧର୍ମ କରୁଥିଲେ । ତାଙ୍କ ଜମିଦାରୀ ଅନ୍ତର୍ଗତ ପ୍ରଜାଙ୍କର ସୁବିଧା ଅସୁବିଧା ପ୍ରତି ନଜର ଦେଉଥିଲେ । ପ୍ରଜାମାନେ ତାଙ୍କୁ ମାନିକରି ଚଳୁଥିଲେ । ସେ ଅନ୍ୟାୟ ଅତ୍ୟାଚାର ବରଦାସ୍ତ କରୁ ନଥିଲେ । ଅଯଥା ପ୍ରଶଂସା କିମ୍ବା ଖୋସାମତକୁ ଜମା ଭଲପାଉ ନଥିଲେ ।





Digitized by srujanika@gmail.com

ସେଠାକାର ରାଜା ଥିଲେ ରୁଦ୍ର ପ୍ରସାଦ । ସେ ପ୍ରାୟ ସମୟ ବିଳାସବ୍ୟବସରେ ମଜି ରହୁଥିଲେ । ଶିକାର କରିବାରେ ବହୁତ ସଉକ ଥିଲା । ତେଣୁ ମନଇଚ୍ଛା ନିରୀହ ପ୍ରାଣୀମାନଙ୍କୁ ମାରି ଭାରି ଖୁସି ହେଉଥିଲେ । ତାଙ୍କୁ ଘେରି ଯେଉଁ ପାରିଷଦସବୁ ରହୁଥିଲେ ସେମାନେ ରାଜାଙ୍କୁ ପ୍ରଶଂସାରେ ପୋତି ପକାଉ ଥିଲେ । ରାଜା ଯାହା କରୁଥିଲେ ସେ କାମ ସଂପୂର୍ଣ୍ଣ ଠିକ୍ ବୋଲି କହି ରାଜାଙ୍କର ପ୍ରିୟ ହେବାପାଇଁ ଲାଗି ପଡ଼ିଥିଲେ । ପ୍ରଜାମାନେ କିପରି ଅଛନ୍ତି ତାହା ଜାଣିବାକୁ ତାଙ୍କର ଆଗ୍ରହ ନ ଥିଲା କି ସମୟ ନଥିଲା । ପାଖ ଲୋକମାନେ ଯାହା ବତେଇ ଦେଉଥିଲେ ସେଥିରେ ବିଶ୍ୱାସ କରି ଯାଉଥିଲେ । ମନେମନେ ଭାବୁଥିଲେ ମୋ ରାଜ୍ୟରେ ସବୁ ଠିକ୍ ଭାବରେ ଚାଲିଛି । ଏହାର ସୁଯୋଗ ନେଇ ତାଙ୍କ ଅଧୀନରେ ଥିବା ଜମିଦାର, ପଦସ୍ଥ କର୍ମଚାରୀ ପ୍ରଜାଙ୍କୁ ଶୋଷଣକରି, ଅତ୍ୟାଚାର କରି ସେମାନଙ୍କ ଅବସ୍ଥା ଶୋଚନୀୟ କରି ଦେଇଥିଲେ । ଖୁବ୍ କମ୍‌ଲୋକ ସେମାନଙ୍କ ଭିତରେ ଭଲ ଥିଲେ । ଯେଉଁମାନେ କି ଦୁର୍ନୀତି କରୁ ନଥିଲେ । ପ୍ରଜାମାନଙ୍କର ଭଲ ପାଇଁ ଚିନ୍ତା କରୁଥିଲେ । କିନ୍ତୁ ସେହି ହାତଗଣତି ଲୋକଙ୍କ ନାମରେ ଅନ୍ୟ କର୍ମଚାରୀମାନେ ରାଜାଙ୍କୁ ମିଛସତ କହି ତାଙ୍କ ମନରେ ବିରକ୍ତି ସୃଷ୍ଟି କରାଇ ଦେଉଥିଲେ ଯାହାଫଳରେ ରାଜା ସେହି ବ୍ୟକ୍ତିଙ୍କ ଉପରେ ଅଯଥାରେ ରାଗ ରଖୁଥିଲେ ।

ସେହିପରି ବ୍ୟକ୍ତିଙ୍କ ମଧ୍ୟରେ ବିଷ୍ଣୁପୁରର ପୂର୍ବ ବର୍ଣ୍ଣିତ ଜମିଦାର ସୂର୍ଯ୍ୟଦେବ ଥିଲେ । ରାଜାଙ୍କର ପାଖ ଲୋକମାନଙ୍କ କଥାରେ ପଡ଼ି ରାଜା ଥରେ ସୂର୍ଯ୍ୟଦେବଙ୍କୁ ଡକାଇ ପଠାଇଲେ । ରାଜାଙ୍କ କର୍ମଚାରୀ ଯାଇ ଜମିଦାରଙ୍କ ନିକଟରେ ପହଞ୍ଚିଲା ଏବଂ ରାଜା ତାଙ୍କୁ ଡକାଇ ପଠାଇଛନ୍ତି ବୋଲି ଜଣାଇ ଦେଲା । ଏଇ ସଙ୍ଗେସଙ୍ଗେ ତା' ସହିତ ଯିବାକୁ ହେବ ଶୁଣି ସୂର୍ଯ୍ୟଦେବ ମନେମନେ ବ୍ୟସ୍ତ ହେଲେ । ତଥାପି ରାଜାଙ୍କର ଆଜ୍ଞାକୁ ମାନ୍ୟତା ଦେଇ ସେହି କର୍ମଚାରୀ ସହିତ ରାଜାଙ୍କୁ ଦେଖା କରିବା ନିମନ୍ତେ ସେ ଆସିଲେ ।



Digitized by srujanika@gmail.com



ରାଜା ରୁଦ୍ରପ୍ରସାଦ ସେହି ସମୟରେ ଦରବାରରେ ବସିଥାନ୍ତି । ତାଙ୍କର କର୍ମଚାରୀଟି ଜମିଦାରଙ୍କୁ ସଙ୍ଗରେ ଧରି ପହଞ୍ଚିବାର ଦେଖି ରାଜା ତଥା ତାଙ୍କର ପାରିଷଦବର୍ଗ ତାଙ୍କ ଉପରେ ଦୃଷ୍ଟି ପକାଇଲେ । ରାଜା ତାଙ୍କୁ ବସିବା ନିମନ୍ତେ ଇସାରା କରନ୍ତେ ସେ ଆସନରେ ବସିଲେ । ରୁଦ୍ରପ୍ରସାଦ ଜଣେ ପ୍ରଜାର ବିଚାର କରୁଥାନ୍ତି । ସେହି ପ୍ରଜାଟିର ପଞ୍ଜରା ହାଡ଼ ଗଣି ହୋଇଯାଉଥାଏ । ଦେହର ଚର୍ମ ଶୁଖି ପେଟ ଯାଇ ପିଠିରେ ଲାଗିଥାଏ । ଆଖି ତଳରେ ଗାଡ଼ ହୋଇଯାଇଥାଏ । ତା'ର ଦୁର୍ବଳ ଚେହେରା ଦେଖିଲେ ମନରେ ଦୟା ଆସିବ । କିନ୍ତୁ ଅନ୍ୟଜଣେ ଜମିଦାର ରାଜାଙ୍କୁ କହୁଥାନ୍ତି ଯେ ସେ ବର୍ଷକରୁ ଊର୍ଦ୍ଧ୍ୱ ହେଲାଣି ଜମିର ଖଜଣା ପଇଠ କରିନାହିଁ । ସେଥିରୁ ତା' ପୁଅ କହିଲା ଯେ ଏଥର ଫସଲ ଭଲ ହୋଇ ନଥିବାରୁ ଆରବର୍ଷକୁ ଖଜଣା ଦିଆଯିବ । ସେ ପୁଅର ସାଙ୍ଗଦଳ ତାହାକୁ ସମର୍ଥନ କରିଥିବାରୁ ଏ ଲୋକକୁ ଏକାଠି ରାଜାଙ୍କ ନିକଟକୁ ସେ ନେଇଆସିଛନ୍ତି । ରାଜାଙ୍କ ସହିତ ତାଙ୍କ ଖୋସାମତିଆ ଦଳ ମିଶି ସେହି ଲୋକଟିକୁ ବିଭିନ୍ନ ଧମକ ଦେଲେ । ସାତଦିନ ଭିତରେ ଖଜଣା ପଇଠ ନ କଲେ ପରିବାର ସାରାଙ୍କୁ ବାନ୍ଧି ବନ୍ଦୀଶାଳାରେ ପକାଇ ଦେବ ବୋଲି କହିଲେ । ସୂର୍ଯ୍ୟଦେବ ସେହି ଲୋକଟିର ଦୁଃଖ ସହି ନ



Digitized by srujanika@gmail.com



ପାରି ରାଜାଙ୍କୁ କହିଲେ, ମଣିମା, ତା'ର ତ ଫସଲ ହୋଇନାହିଁ, ସେ ଆପଣଙ୍କୁ କିପରି ଖଜଣା ଦେବ ? ଆପଣ ତ ପ୍ରଜାଙ୍କର ବାପା ମାଆ, ତାଙ୍କ ଦୁଃଖ ଆପଣ ନ ବୁଝିଲେ କିଏ ସେ ବୁଝିବ ?" ରୁଦ୍ର ପ୍ରତାପଙ୍କୁ ଆଉ ସମ୍ଭାଳେ କିଏ ? ସୂର୍ଯ୍ୟଦେବଙ୍କୁ ଅପମାନସୂଚକ ବାକ୍ୟ କହିବାରେ ଲାଗିଲେ । ତାଙ୍କ ପାଖ ଲୋକମାନେ ତାଙ୍କୁ ସମର୍ଥନ କଲେ । ଶେଷକୁ ରାଜା ଋହିଁଲେ ତାଙ୍କର ସର୍ବନାଶ କରିପାରନ୍ତି ବୋଲି ଜଣାଇ ଦେଲେ । ସୂର୍ଯ୍ୟଦେବଙ୍କର ଦୁଃଖର ସୀମା ରହିଲା ନାହିଁ । ହେଲେ ସେ ସାହସ ବାନ୍ଧି କହିଲେ, "ସେହି ଲୋକର ଯେତିକି ଖଜଣା ପଇଠ କରିବାର ଅଛି ତାହା ମୁଁ ଦେଇଦେବି । ଦୟାକରି ତାକୁ ଛାଡ଼ି ଦିଅନ୍ତୁ । ରୁଦ୍ର ପ୍ରତାପ କହିଲେ, "ତମ ବିଷୟରେ ମୁଁ ଯାହା ଶୁଣିଥିଲି ତେବେ ତାହା ଠିକ୍ ଥିଲା । ସୂର୍ଯ୍ୟଦେବ କହିଲେ, "ମହାରାଜ, ମୁଁ ଜାଣିବାରେ ତ କାହାର କିଛି କ୍ଷତି କଲାପରି କାର୍ଯ୍ୟ କରିନାହିଁ । ମୋ ବିଷୟରେ କିଏ କ'ଣ ଭୁଲ୍ କଥା କହିଥିବ ।" ରାଜା କହିଲେ, "ତମେ ମୋର ଆଦେଶର ଅବମାନନା କଲ । ମୁଁ ଯାହାକୁ ଦଣ୍ଡ ଦେବାକୁ ଯାଉଛି ତାକୁ ଗ୍ରହଣ କରିପାରୁ ନାହିଁ । ଏହା କ'ଣ ମୋପ୍ରତି ତୁମର ଅପମାନ ନୁହେଁ ? ତୋଷାମଦକାରୀମାନେ "ଆଜ୍ଞା ହଜୁର, ଠିକ୍ ମଣିମା" ଇତ୍ୟାଦି



Digitized by srujanika@gmail.com

କହିବାରେ ଲାଗିଥାନ୍ତି । ରାଜା ପୁଣି କହିଲେ, "ମୁଁ ଚାହିଁଲେ ତୁମକୁ ମୃତ୍ୟୁଦଣ୍ଡ ଦେଇପାରେ ।" କିନ୍ତୁ ତୁମେ ଯଦି କ୍ଷମା ମାଗିବ ତେବେ କେବଳ ଜୋରିମାନା କରି ଛାଡ଼ିଦେବି । ସୂର୍ଯ୍ୟଦେବ ନିର୍ଭୀକ ଭାବରେ କହିଲେ, ମୁଁ ଆପଣଙ୍କ ନିକଟରେ କୌଣସି ଅପରାଧ କରିନାହିଁ । କେବଳ ନ୍ୟାୟ କଥାଟି କହିଛି ମାତ୍ର । ଠିକ୍ ଏହି ସମୟରେ ଏକ ସର୍ପ ଆସି ରାଜାଙ୍କୁ ଦଂଶନ କଲା ଏବଂ ସେ ଦଂଶନର ଜ୍ୱାଳାରେ ଅଚେତ ହୋଇପଡ଼ିଲେ । ସମସ୍ତେ ରାଜାଙ୍କ ଅବସ୍ଥା ଦେଖି ଧାଁଧପଡ଼ କରି ରାଜବୈଦ୍ୟଙ୍କୁ ଡକାଇଲେ । ସେ ଯଥାଶୀଘ୍ର ଉପସ୍ଥିତ ହୋଇ ତାଙ୍କ ଜଡ଼ିବୁଟି ପ୍ରୟୋଗ କରି ରାଜାଙ୍କୁ ସାଧାରଣ ଅବସ୍ଥାକୁ ଅଣାଇବାକୁ ଚେଷ୍ଟାକଲେ । କିନ୍ତୁ ସମସ୍ତ ଚିକିତ୍ସା ବିଫଳ ହେଲା । ଯେଉଁ ବୁଢ଼ାଲୋକଟି ଦଣ୍ଡିତ ହେବାକୁ ଯାଉଥିଲା ସେ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇଲା ଏବଂ ରାଜାଙ୍କର ଆସୁ ଆରୋଗ୍ୟ କାମନା କଲା । ରାଜାଙ୍କ ପ୍ରତି ସେହି ଦୁର୍ବଳ ଲୋକଟିର ଆନୁଗତ୍ୟ ଦେଖି ସେଠାରେ ଉପସ୍ଥିତ ଥିବା ଲୋକ ଆଶ୍ଚର୍ଯ୍ୟ ହେଲେ । ଯେଉଁ ରାଜା କିଛିସମୟ ପୂର୍ବରୁ ତାକୁ ସପରିବାର ଦଣ୍ଡିତ କରିବାର ଧମକ ଦେଉଥିଲେ ତାଙ୍କ ପାଇଁ ସେ ଏତେ ଦରଦ ଦେଖାଉଛ । ସୂର୍ଯ୍ୟଦେବ ଏହା ଦେଖି ସେମାନଙ୍କୁ ଜଣାଇ ଦେଲେ ଯେ ମଣିଷପଣିଆ ଏହି ଦୁର୍ବଳ ବ୍ୟକ୍ତି ଠାରୁ ସମସ୍ତେ ଶିଖିବା ଦରକାର । ରାଜବୈଦ୍ୟଙ୍କ ଔଷଧ ହେଉ ବା ଦୁର୍ବଳ ଲୋକଟିର ଭଗବାନଙ୍କ ପ୍ରତି ପ୍ରାର୍ଥନା ହେଉ ବା ରାଜାଙ୍କର ଭାଗ୍ୟ ବଳରୁ ହେଉ ରାଜା ଚେତାପାଇ ଉଠିଲେ । ରାଜବୈଦ୍ୟ ଜଣକ ଚରିତ୍ରବାନ ଆଦର୍ଶ ବ୍ୟକ୍ତି ଥିଲେ । ସେ କହିଲେ, ମଣିମା ଏହି ଲୋକଟିର ଆକୁଳ ପ୍ରାର୍ଥନାରୁ ଆପଣ ପ୍ରାଣ ପାଇଲେ ବୋଲି ଜାଣନ୍ତୁ । ରାଜା ସେହି ବ୍ୟକ୍ତି ଆଡ଼କୁ ଚାହିଁ ତା' ପ୍ରତି କରିଥିବା ପୂର୍ବ ବ୍ୟବହାର କଥା ମନେପକାଇ ଦୁଃଖିତ ଓ ଅନୁତପ୍ତ ହେଲେ । କ୍ରମଶଃ ରାଜା ଚିକିତ୍ସା ଦ୍ୱାରା ଭଲ ହୋଇଉଠିଲେ ଏବଂ ସୂର୍ଯ୍ୟଦେବଙ୍କୁ ନିଜ ରାଜ୍ୟପାରିଷଦଙ୍କ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ପଦରେ ନିଯୁକ୍ତି ଦେଇ ତାଙ୍କରି ପରାମର୍ଶରେ ରାଜକାର୍ଯ୍ୟ ଚଳାଇଲେ । ସୂର୍ଯ୍ୟଦେବଙ୍କର ପୁଅ ତାଙ୍କ ଜମିଦାରୀ କଥା ବୁଝାବୁଝି କଲେ ।



Digitized by srujanika@gmail.com

ସେହି ଗରିବ ପ୍ରଜାଟିର ଖଜଣା ତ ଛାଡ଼ ହେଲା । କଥା ହେଲା ଯେବେ ଫସଲ ଭଲ ହେବନାହିଁ ପ୍ରଜାଙ୍କୁ ରାଜନଅରରେ ଶସ୍ୟାଗାରରୁ ଆବଶ୍ୟକ ଅନୁସାରେ ଶସ୍ୟ ଯୋଗେଇ ଦିଆଯିବ । ଏଣିକି ରାଜା ରୁଦ୍ରପ୍ରତାପ ନିଜେ ପ୍ରଜାମାନଙ୍କ ସହିତ ମିଶି ତାଙ୍କ ସୁଖଦୁଃଖ ବୁଝିଲେ । ଖୋସାମତିଆ ଦଳଙ୍କୁ ତାଙ୍କ ପାଖରୁ ବାହାର କରିଦେଲେ । ଏବେ କୂଅ ପୋଖରୀ ଖୋଳା ହେଲା । ପ୍ରଜାଙ୍କ ସମସ୍ୟା କଥା ବୁଝାଗଲା । ରାଜା ଖୁସି, ପ୍ରଜା ଖୁସି, ଦିନେ ରୁଦ୍ର ପ୍ରତାପ ସୂର୍ଯ୍ୟଦେବଙ୍କ ସହିତ କଥା ହେଉହେଉ କହିଲେ, "ଆପଣଙ୍କ ପାଇଁ ମୁଁ ଆଜି ମୋ ପ୍ରଜାଙ୍କର ଗୁରୁତ୍ୱ ଜାଣିପାରିଲି । ସୂର୍ଯ୍ୟଦେବ ହସିଲେ ।





Digitized by srujanika@gmail.com

# ଅସଲ ଉପକାରୀ

ଭୀମର ବୁଢ଼ୀମାଆଟି ଛଡ଼ା ଆଉ କେହି ନାହାନ୍ତି । ତା'ର ହେତୁ ପାଇଲା ଦିନଠାରୁ ସେ ବୁଢ଼ୀମାଆକୁ ଦେଖି ଆସୁଚି । ତା' ସହିତ ରହି ଆସୁଛି । ସେହି ବୃଦ୍ଧା ଠାରୁ ଶୁଣିଛି ଗୋଟେ ବର୍ଷ ବଡ଼ ବନ୍ୟା ହୋଇଥିଲା । ସେଥିରେ ତା' ବାପା ମାଆ ଦୁଇଜଣ ଭାସିଗଲେ । ତା' ପରେ ତାଙ୍କର ଆଉ ପତ୍ତା ମିଳିଲା ନାହିଁ । ଭୀମ ସେତେବେଳେ ଛୁଆଟିଏ ହୋଇଥାଏ । ବନ୍ୟା ପରେପରେ ଝାଡ଼ାବାନ୍ତି ବ୍ୟାପୀ ଗଲା । ସେଥିରେ ଭୀମର ଅବସ୍ଥା ଶୋଚନୀୟ ହୋଇଯାଇଥିଲା । କେତେ ଲୋକ ଆସି ରିଲିଫ୍ ଦେଲେ । ଡାକ୍ତରମାନେ ଆସିଲେ । ଔଷଧପତ୍ର ଦେଲେ । ଯାହାହେଉ





Digitized by srujanika@gmail.com



ସେହି ଔଷଧରେ ଭୀମ ଭଲ ହେଲା । ବୁଢ଼ୀଟି ପୁଅବୋହୂ ଅର୍ଥାତ୍ ଭୀମ ବାପମାଆଙ୍କର ଆଶା ଛାଡ଼ି ରହିଲା । କେତେ କଷ୍ଟରେ ସେ ନାତିକୁ ପାଳୁଛି । ଗାଆଁରେ କାହା ଘରେ ଗାଈଗୋରୁ କାମ କରିଦିଏ, କାହା ଘରେ ବିରି ବାଟିଦିଏ, କୋଉଠି ଯାଇ ଧାନ ଉଁଷେଇ ଦିଏ, ଇତ୍ୟାଦି । ଏମିତି ବୋଲହାକ କାମ ଖୁବ୍ ଭଲ କରୁଥିବାରୁ କେତେ ଘରୁ ତାକୁ ଡକାପଡ଼େ । ବୁଢ଼ୀଟି ନସରପସର ହୋଇ ବଡ଼ିଭୋରରୁ ଉଠି ଘରର ବାସିକାମ ସାରି ସମସ୍ତଙ୍କର ବୋଲହାକ ଶେଷକରି ଘରକୁ ଆସିଲା ବେଳକୁ ଭୀମ ଲାଗି ଯାହାହେଲେ ଆଣିଥାଏ । ଯାହା ଘରେ କାମଦାମ କରିଦିଏ ସେମାନେ ଜାଣନ୍ତି ବୁଢ଼ୀର ନାତିଟି ଏକୁଟିଆ ଘରେ ଅଛି । ଯାହା ଘରେ ଭଲମନ୍ଦ ଦରବ କିଛି ଥାଏ ପିଠା ଦୁଇଟା, ମୁଢିମୁଆଁ କି ଚେନାଚୁର ଇତ୍ୟାଦି ନାତି ଲାଗି ନେଇ ଯାଆ କହି ତା' ହାତରେ ଦେଇଥାନ୍ତି । ବୁଢ଼ୀ ଆଣି ଭୀମକୁ ସେସବୁ ଦେଇଦିଏ । ଛୋଟ ଥିଲା ବେଳେ ଭୀମ ସବୁଗୁଡ଼ିକ ଖାଇ ଦେଉଥିଲା । ଟିକିଏ ବଡ଼ ହେଲା ପରେ ଜୋର୍‌କରି ସେଥିରୁ କିଛି ବୁଢ଼ୀମାଆକୁ ଖୁଆଏ । ବୁଢ଼ୀ ମାଆର ମନରେ ବଡ଼ ଚିନ୍ତା ଭୀମଟି କେମିତି ପାଠ ଦି'ଅକ୍ଷର



Digitized by srujanika@gmail.com

ପଢ଼ିବ, ସ୍କୁଲ୍‌କୁ ଯିବ । ଯେଉଁମାନଙ୍କ ଘରେ କାମଦାମ କରେ ତାଙ୍କ ଆଗରେ ଭୀମର ସ୍କୁଲ୍ ଯିବା କଥା ଉଠାଏ । ସେମାନେ ତା' କଥା ଶୁଣିଦେଇ ରହନ୍ତି ।

ଗାଆଁ ସ୍କୁଲ୍‌କୁ ଜଣେ ନୂଆ ଶିକ୍ଷକ ଆସିଥାନ୍ତି । ତାଙ୍କ ନାମ ଗୋପାଳଚନ୍ଦ୍ର ମିଶ୍ର । ସେ ଥରେ ଭୀମ ଘରବାଟ ଦେଇ ଯାଉଥାନ୍ତି । ଭୀମ ସେତେବେଳେ ଏକୁଟିଆ ଘରେ ଥାଏ । ବୁଢ଼ୀମାଆ କାମ କରିବାକୁ ଯାଇଥାଏ । ଭୀମ ଘରର ପିଣ୍ଡାରେ ଠିଆ ହୋଇଥିଲା । ଗୋପାଳ ମିଶ୍ରଙ୍କୁ ଦେଖି ଦଉଡ଼ି ଆସି ଜୁହାର ହେଲା । ସେ ସାଇକେଲ୍‌ଟିକୁ ଅଟକାଇ ଦେଲେ । ଏହି ପିଲାଟିକୁ ଦେଖି ତା'ର ନାମ ପଚାରିଲେ । ସ୍କୁଲ୍ ଯାଉଛ କି ନାହିଁ ପଚାରି ବୁଝିଲେ । ସ୍କୁଲ୍ ଯିବା କଥା ପଚାରିଲା ବେଳକୁ ଭୀମର ଆଖି ଲୁହ ଛଳଛଳ ହୋଇଗଲା । ଗୁରୁଜୀ ତା' ଅବସ୍ଥା ଦେଖି ପାଠପଢ଼ା ପ୍ରତି ପିଲାଟିର କେତେ ଆଗ୍ରହ ସେଇଥିରୁ ଅନୁମାନ କରିନେଲେ । ପକେଟ୍‌ରୁ କାଗଜ ବାହାରକରି ତା'ର ନାମ ଲେଖି ନେଇଗଲେ । ବୁଢ଼ୀମାଆ ଆସିଲେ ସ୍କୁଲ୍‌ରେ ତାଙ୍କ ସହିତ ଯାଇ ଦେଖା କରିବାକୁ କହିଲେ । ଭୀମକୁ ମଧ୍ୟ ବୁଢ଼ୀମାଆ ସାଙ୍ଗରେ ଯିବାପାଇଁ ତାଗିଦ କରିଦେଲେ । ତା'ପରେ ସେ ସେଠାରୁ ଗଲେ ।

ଭୀମର ମନ ଆନନ୍ଦରେ କୁଣ୍ଢେମୋଟ । ଗଲାବର୍ଷ ତା' ସାଙ୍ଗର ପିଲାମାନେ ସ୍କୁଲ୍ ଗଲାବେଳେ ତା'ର ମନ ହେଉଥିଲା ସିଏ ବି ସେମାନଙ୍କ ସାଙ୍ଗରେ ସ୍କୁଲ୍ ଯାଆନ୍ତା, ପାଠପଢ଼ନ୍ତା । ଘରେ ବୁଢ଼ୀମାଆକୁ ସେଇକଥା କହିବାରେ ସେ କାନ୍ଦକାନ୍ଦ ହୋଇଗଲା । ଭୀମ କ'ଣ ଭାବିଲା କେଜାଣି ଆଉ ସ୍କୁଲ୍ ଯିବାକଥା ବୁଢ଼ୀମାଆକୁ କହିଲା ନାହିଁ । ଏତେ ଛୋଟପିଲା ହୋଇ ମଧ୍ୟ ସାଙ୍ଗସାଥୀ ଯାହା ସ୍କୁଲ୍‌ରେ ପଢ଼ି ଆସନ୍ତି ସେ ସାଙ୍ଗମେଳରେ ସେମାନଙ୍କ ଠାରୁ ଶୁଣି ବୁଝି ଘରେ ବୁଢ଼ୀମାଆ ଯାତ୍ରାରୁ କିଣି ଦେଇଥିବା ସିଲଟରେ ବସି ଲେଖେ । ଲେଖିଲେଖି ତା'ର ସେ ପାଠ ହୋଇଯାଏ । ସ୍କୁଲ୍‌ରେ ନୂଆନୂଆ ପାଠ ଅନେକ ଭୀମ ଜାଣିଯାଇଥାଏ । ଶିଖିବାରେ ତା'ର ଆଗ୍ରହ କାହିଁରେ କ'ଣ ତା' ସାଙ୍ଗମାନେ ସ୍କୁଲ୍ ଯିବା ଗୋଟିଏ ବର୍ଷ ଭିତରେ ଯାହା ଶିଖି ଥାଆନ୍ତି ଭୀମ ଘରେ ଥାଇ ମଧ୍ୟ ସେଇଥିରୁ ଅନେକ ଜାଣିଥାଏ ।



Digitized by srujanika@gmail.com



ତଥାପି ସ୍କୁଲ୍ ଯାଇ ସାଙ୍ଗମାନଙ୍କ ମେଳରେ ବସି ପାଠପଢ଼ିବ । ଇଏ କ'ଣ କମ୍ କଥା ।

ବୁଢ଼ୀମାଆ କାମରୁ ଫେରିଲା ପରେ ଦେଖିଲା ଭୀମ ସଫାସୁତୁରା ଜାମାପେଣ୍ଟ ପିନ୍ଧିଛି । ମୁଣ୍ଡ କୁଣ୍ଡାଇ ଦେଇଛି । ଏତେଦିନ ହେଲାଣି ସେ ଦେଖିଛି କାମରୁ ଫେରିଲା ପରେ ତାକୁ କହିଲେ ଯାଇ ଗୋଧୋଇବ । କହିଲେ ମୁଣ୍ଡ କୁଣ୍ଡାଇବ ନ ହେଲେ ବୁଢ଼ୀମା' ତା'ର ମୁଣ୍ଡକୁଣ୍ଡାଇ ଦିଏ । ସକାଳୁ ଭୀମ ଦାନ୍ତଘଷି ବୁଢ଼ୀମା' ରାତିରୁ ତିଆରି କରି ରଖିଥିବା ମୋଟା ଚକୁଳି ଗୁଡ଼ ଲଗାଇ ଖାଇ ଦେଇଥାଏ । ତେଣିକି ସେ ଯାହା ଆଣିଥାଏ ଟିକିଏ ପାଟିରେ ମାରେ । ଆଜି କ'ଣ କୁଆଡ଼େ ଗଲା ପରି ସଜବାଜ ହୋଇଯାଇଛି । ବୁଢ଼ୀମା'କୁ ଦେଖି ଭୀମ ତାକୁ କୁଣ୍ଢାଇ ପକାଇ ତା' ଚାରିପଟେ ବହେ ଘୂରିଗଲା । କହିଲା, 'ତୁ ମୋତେ ଧରି ସ୍କୁଲ୍ ଯିବାକୁ ଗୋପାଳ ଗୁରୁଜୀ କହିଯାଇଛନ୍ତି । ଚଞ୍ଚଳ ବାହାରି ପଡ଼ । ଏକଥା ଶୁଣି ବୁଢ଼ୀମା' ଖୁସିରେ କାନ୍ଦି ପକାଇଲା । ଭୀମକୁ ଧରି କେତେ ଗେହ୍ଲା କଲା । କହିଲା, 'ଏଇଭଳିଆ ମଣିଷ ହେଉଛନ୍ତି ଅସଲ ଉପକାରୀ ସେ ଭୀମ । ନ ହେଲେ ଆମ ମଳିମୁଣ୍ଡିଆଙ୍କ କଥା ସିଏ କାହିଁକି ଭାବନ୍ତେରେ । ଆମପାଇଁ ସେଇ ହେଉଛନ୍ତି ଭଗବାନ । ମୁଁ ଏଇସାଥେ ବାହାରି ପଡୁଛି ।



Digitized by srujanika@gmail.com

ବୁଢ଼ୀମାଆ ସାଥିରେ ଭୀମ ସ୍କୁଲ୍‌କୁ ଗଲା । ଗୋପାଳ ଗୁରୁଜୀ ପ୍ରଧାନଶିକ୍ଷକଙ୍କୁ ଭୀମ କଥା ଆଗରୁ କହି ରଖିଥିଲେ । ସାଙ୍ଗେସାଙ୍ଗେ ତା'ର ନାମ ଲେଖା ହୋଇଗଲା । ବୁଢ଼ୀ ଗୋପାଳ ଗୁରୁଜୀ, ପ୍ରଧାନଶିକ୍ଷକ ତଥା ଅନ୍ୟାନ୍ୟ ଗୁରୁଙ୍କୁ ପ୍ରଣାମ କରିବାକୁ ଭୀମକୁ କହିଲା । ଭୀମ ସେହି ଅନୁସାରେ କାମ କଲା । ଭୀମର ନୂଆ ଜୀବନ ଆରମ୍ଭ ହୋଇଗଲା । ବୁଢ଼ୀ ବିଦ୍ୟାଳୟରେ ଶିକ୍ଷକଶିକ୍ଷୟିତ୍ରୀମାନଙ୍କୁ ଆଶୀର୍ବାଦ କରି ଘରକୁ ଫେରିଲା । ଯେଉଁମାନେ ଜ୍ଞାନର ଆଲୋକ ପ୍ରଦାନ କରିବାରେ ସାହାଯ୍ୟ କରନ୍ତି ସେହିମାନେ ହିଁ ଅସଲ ଉପକାରୀ ।





Digitized by srujanika@gmail.com

# ଈଶ୍ୱର କିପରି ସନ୍ତୁଷ୍ଟ ହୁଅନ୍ତି

ପାଟପୁର ବୋଲି ଗାଁଟିଏ । ସେଇ ଗାଁରେ ଗୋଟିଏ କୃଷକ ତା'ର ପରିବାର ସହିତ ରହୁଥାଏ । ତା'ର ନାମ ନଟବର । ତାକୁ ସମସ୍ତେ ନଟ ବୋଲି ଡାକିଥାନ୍ତି । ପରିବାର କହିଲେ ତା'ର ସ୍ତ୍ରୀ ମଲ୍ଲୀ ଏବଂ ପୁଅଝିଅ ଦୁଇଜଣ । ପୁଅର ନାମ ଭାନୁ ଓ ଝିଅର ନାମ ଲତିକା । ଦିନସାରା ନଟ ଓ ତା'ର ପରିବାର କଠିନ ପରିଶ୍ରମ କରନ୍ତି । ନଟ କ୍ଷେତକୁ ଯାଏ । ନିଜ କ୍ଷେତ ସହିତ ଅନ୍ୟମାନଙ୍କ କ୍ଷେତକୁ ଚାଷକରି ଫସଲ ଉପୁଜାଏ । ଜମିକୁ ବର୍ଷରେ ଦୁଇଥର ଚଷି ଫସଲ କରେ । ଗ୍ରାମର ଅଧିକାଂଶ ଜମି ଥରେଲେଖା ଚାଷ ହେଉଥିବା ବେଳେ ସେ ଦୁଇଥର ଚାଷକରେ । ଫସଲକୁ ଛାଡ଼ି ଅନ୍ୟ ସମୟରେ ଜମିରେ ପରିବା ଲଗାଇ ଦିଏ । ଜମିକୁ ପଡ଼ିଆ ପକାଏ ନାହିଁ । ଯେଉଁମାନଙ୍କ ଜମିରେ ସେ ଚାଷ କରୁଥାଏ ସେମାନଙ୍କୁ ତାଙ୍କର ପ୍ରାପ୍ୟ ଦେବାରେ ହେଳା କରେନାହିଁ । ତେଣୁ ସେମାନେ ବେଳେବେଳେ ନଟ





Digitized by srujanika@gmail.com



ପ୍ରତି ଈର୍ଷାପରାୟଣ ହୋଇପଡ଼ିଲେ ମଧ୍ୟ କିଛି କହନ୍ତି ନାହିଁ । ନିଜ ପାଖରେ ଜମି ରହିଥିଲେ ପଡ଼ିଆ ପଡ଼ିଥାଆନ୍ତା । ଏମିତି ଆରାମରେ ଘରେ ବସି କିଛିକିଛି ଭାଗ ମିଳି ଯାଉଛି । ନଟକୁ ମଲ୍ଲୀ ତା' କାମରେ ବହୁତ ସାହାଯ୍ୟ କରେ । ସକାଳୁ ଚହା, ରୁଟି କରି ନଟକୁ ଦିଏ । ଦ୍ୱିପହରକୁ ରାନ୍ଧିସାରି ଗରମ ଗରମ ଖାଇବା ନେଇ ବିଲରେ ଦେଇଆସେ । ଗାଇଗୋରୁଙ୍କୁ କୁଣ୍ଡି ରାନ୍ଧି ଦିଏ । କୁଣ୍ଡା ତୋରାଣି ମିଶାଇ ସେମାନେ ଶାନ୍ତିରେ ଖାଆନ୍ତି । ସବୁଦିନ ସକାଳୁ ଭାନୁ ଯାଇ ଘାସ କାଟି ଆଣେ । ଗୋରୁଗାଇ ଖୁସିରେ କଅଁଳିଆ ଘାସ ଖାଆନ୍ତି । ଘାସ ଖାଇଲେ ଗାଈ ଅଧିକ କ୍ଷୀର ଦିଏ । ମଲ୍ଲୀ ଗୁହାଳକୁ ଦୁଇଥର ସଫା କରେ । ଗାଇଗୋରୁଙ୍କୁ ପରିଷ୍କାର ପରିବେଶରେ ରଖେ । ଲତିକା ମାଆକୁ ଘରକାମରେ ସାହାଯ୍ୟ କରେ । ନଳକୂପରୁ ପାଣି ବୁହାଇ ଆଣି ଗରା, ବାଲ୍‌ତିମାନଙ୍କରେ ଭର୍ତ୍ତିକରି ରଖେ । ଘରକୁ ଝାଡୁ କରେ । ଘର ପାଖ ବାରିକୁ ଭାଇ ସହିତ ମିଶି ସଫାକରେ । ଗଛରେ ପାଣିଦିଏ । ଗଛମୂଳ ସଫାରଖେ । ଭାଇଭଉଣୀ ମିଶି ବାରିଟିକୁ ସୁନ୍ଦର କରି ରଖିଥାଆନ୍ତି । ଏହିପରି ପରିବାର ସାରା କର୍ମରେ ଲାଗି ଶାନ୍ତିଶୃଙ୍ଖଳାରେ ଜୀବନ



Digitized by srujanika@gmail.com

ଅତିବାହିତ କରୁଥାଆନ୍ତି । ଭାନୁ ଓ ଲତିକା ନିୟମିତ ବିଦ୍ୟାଳୟକୁ ଯାଆନ୍ତି । ନଟ ଏବଂ ମଲ୍ଲୀଙ୍କର ବହୁତ ଇଚ୍ଛା ପୁଅଝିଅ ଦୁଇଜଣଙ୍କୁ ଅଧିକ ପାଠପଢ଼ାଇବାକୁ ।

ଦିନକର କଥା, ଭାନୁ ଓ ଲତିକା ବିଦ୍ୟାଳୟରୁ ଫେରୁ ଥାଆନ୍ତି । ବାଟରେ ଦେଖିଲେ ତାଙ୍କ ଗାଆଁରେ ମହନୀ ଅଜା ଗୋଟିଏ ବରଗଛକୁ ଆଉଜି ଆଖିବୁଜି ବସିଛନ୍ତି । ସେମାନେ ତାଙ୍କ ନିକଟକୁ ଗଲେ କହିଲେ, ଅଜା ! ଏଠି କ'ଣ ଶୋଇପଡ଼ିଛ କି ? ମହନୀଅଜା କିଛି ଉତ୍ତର ଦେଲେ ନାହିଁ । ଭାଇଭଉଣୀ ଦୁହେଁ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ । ତା'ପରେ ଭାବିଲେ ସେ ଅଚେତ ହୋଇଯାଇଛନ୍ତି ବୋଧେ । ପାଖରୁ ପାଣି ଯୋଗାଡ଼ କରି ଆଣି ତାଙ୍କ ମୁହଁରେ ସିଞ୍ଚିଲେ । କିଛିସମୟ ସିଞ୍ଚିଲା ପରେ ଦେହହାତ ଆଉଁଷିଲାରୁ ଅଜା ଏପଟସେପଟ ହେଲେ । ଆଖି ଖୋଲିଲେ, କହିଲେ, ହାଟରୁ ଫେରୁଥିଲି । ମୁଣ୍ଡ କ'ଣ ହୋଇଗଲା । ଏଇଠି ଟିକେ ବସିପଡ଼ିଲି । ପାଖରେ ତାଙ୍କ ସଉଦା ବ୍ୟାଗ୍ ରଖା ହୋଇଥିଲା । ଭାନୁ ତାଙ୍କର ବ୍ୟାଗ୍‌ଟିକୁ ଧରିଲା । ଲତିକା ତାଙ୍କ ହାତଧରି ଚାଲିଲା । ସେମାନଙ୍କ ଘରବାଟ ଦେଇ ଅଜାଙ୍କ ଘରକୁ ରାସ୍ତା । ଦୁଇ ଭାଇଭଉଣୀ ଅଜାଙ୍କୁ ସାଙ୍ଗରେ ଧରି ପ୍ରଥମେ ନିଜ ଘରକୁ ନେଇଗଲେ । ଅଜା ନଟର ପରିବାରକୁ ଭାରି ଭଲପାଆନ୍ତି ।





Digitized by srujanika@gmail.com

ମଲ୍ଲୀ ଯେମିତି ଦେଖିଛି ତାକୁ ଜୁହାର ହେଲା । ଅଜା ତାକୁ ସବୁକଥା କହିଲେ । ମଲ୍ଲୀ କ୍ଷୀର ଗରମକରି ଗୋଟିଏ ଗ୍ଲାସ୍‌ରେ ଆଣି ତାଙ୍କୁ ପିଇବାକୁ ଦେଲା । ଅଜା କ୍ଷୀର ପିଇ ସୁସ୍ଥ ଅନୁଭବ କଲେ । ସେ ଆଗରୁ ଗାଁ ସ୍କୁଲ୍‌ରେ ଶିକ୍ଷକତା କରୁଥିଲେ । ପରେ ଅବସର ନେଇଥିଲେ । ଘରେ ପିଲାଙ୍କୁ ମାଗଣାରେ ଶିକ୍ଷାଦାନ କରୁଥିଲେ ।

ମହନୀ ଅଜା ଭାନୁ ଓ ଲତିକାଙ୍କୁ ବହୁତ ଆଶୀର୍ବାଦ କଲେ । ପିଲାଙ୍କୁ ଉପଯୁକ୍ତ ସଂସ୍କାର ଦେଇ ବଢ଼ାଇ ଥିବାରୁ ମଲ୍ଲୀକୁ ପ୍ରଶଂସା କଲେ । କହିଲେ, ଅନ୍ୟର ଉପକାରରେ ଆସିଲେ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । ଯେତେ ଭଲଭଲ କଥା ଆମେ ବହିରେ ପଢୁଛୁ, କାହାଣୀ ଶୁଣୁଛୁ ତାକୁ ବାସ୍ତବ ଜୀବନରେ କାର୍ଯ୍ୟରେ ଲଗାଇବା ପାଇଁ ଶିକ୍ଷା ଦିଆଯାଇଛି । ଖାଲି ଭଲକଥା ପଢ଼ିଦେଲେ ବା ଲେଖି ଦେଲେ ହେବନାହିଁ । ନିଜ ଜୀବନରେ ସେହି କଥାର ଉପଯୋଗ କରିବାକୁ ହେବ । ତେବେ ଯାଇ ଈଶ୍ୱର ସନ୍ତୁଷ୍ଟ ହେବେ । ଅସୁବିଧାରେ ଦୁଃଖରେ ପଡ଼ିଥିବା ଜୀବ ପ୍ରତି ଆମେ ଯାହା ପାରିବା କରିବା । ମଣିଷ, ପଶୁପକ୍ଷୀ ସମସ୍ତେ ଈଶ୍ୱରଙ୍କ ସୃଷ୍ଟି । ଗଛଲତା, ଫୁଲଫଳ ସବୁ ତାଙ୍କରି ଦାନ । ଆମେ ଆମର କର୍ତ୍ତବ୍ୟ କରିବା ସହିତ ଅନ୍ୟର ଉପକାର କରିପାରିଲେ ଆମ ଜୀବନ ସାର୍ଥକ ହେବ । ଭାନୁ, ଲତିକା, ମଲ୍ଲୀ ସମସ୍ତେ ଅଜାଙ୍କର ଉପଦେଶ ଶ୍ରଦ୍ଧାର ସହିତ ଶୁଣିଲେ । ତା'ପରେ ଅଜା ତାଙ୍କ ଘରକୁ ଯିବାକୁ ଉଠିବାରୁ ଭାନୁ ତାଙ୍କୁ ଛାଡ଼ିଦେଇ ଆସିବାକୁ ବାହାରିଲା । ଅଜା କହିଲେ, ମୁଁ ଏବେ ପୂରା ଠିକ୍ । ସେ ସଉଦା ବ୍ୟାଗ୍ ଧରି ନିଜଘର ଅଭିମୁଖେ ଚାଲିଲେ ।





Digitized by srujanika@gmail.com

# ଉପଯୁକ୍ତ ବଣିକ

ଇଂରେଜ ଶାସନ ସମୟର କଥା । ସଡ଼କ ପଥର ଉନ୍ନତି ସେତେ ହୋଇ ନଥାଏ । ଟ୍ରେନ୍ ଚାଲି ନଥାଏ । ଲୋକମାନେ ଜଳପଥରେ ବାଣିଜ୍ୟ ବ୍ୟବସାୟ କରୁଥାଆନ୍ତି । ଓଡ଼ିଶାର ଲୋକମାନେ କଲିକତା, ମାନ୍ଦ୍ରାଜ ଇତ୍ୟାଦି ସ୍ଥାନକୁ ଯାଇ କେତେ ଦ୍ରବ୍ୟ ବିକ୍ରି କରନ୍ତି । ପଥର ମୂର୍ତ୍ତି, କାଠ ତିଆରି ସୂକ୍ଷ୍ମ କାରୁକାର୍ଯ୍ୟ, ସୁନାରୂପାର ତାରକସି କାମ, ହାତବୁଣା ଶାଢ଼ୀ ଇତ୍ୟାଦି ବିଭିନ୍ନ ରକମର ଜିନିଷ ବିକ୍ରି କରି ଅନେକ ଅର୍ଥ ରୋଜଗାର କରନ୍ତି । ସେପଟ ରାଜ୍ୟର ଲୋକମାନେ





Digitized by srujanika@gmail.com

ମଧ୍ୟ ତାଙ୍କ ଜିନିଷ ଆଣି ଓଡ଼ିଶାରେ ବିକ୍ରି କରି ଲାଭବାନ ହୁଅନ୍ତି । ରାଜ୍ୟ ରାଜ୍ୟ ଭିତରେ ଏହିପରି ବ୍ୟବସାୟ ବାଣିଜ୍ୟ ଚାଲିଥାଏ ।

ନନ୍ଦକିଶୋର ସାହୁ ନାମରେ ଜଣେ ବଣିକ ଥାଆନ୍ତି । ତାଙ୍କର ଚାରିଖଣ୍ଡ ପାଲଟଣା ଜାହାଜ ଥାଏ । ବାଣିଜ୍ୟରୁ ତାଙ୍କର ବହୁତ ଲାଭ ହୁଏ । ଜଣେ ଧନଶାଳୀ ବ୍ୟକ୍ତି ହିସାବରେ ସେ ଜଣାଶୁଣା । ତାଙ୍କର ଚାରୋଟି ଜାହାଜରେ ଚାରିଜଣ ପୁଅଙ୍କୁ ସେ ପଠାନ୍ତି । ପୂର୍ବରୁ ନିଜେ ଯାଉଥିଲେ । ବୟସ ଅଧିକ ହେବାରୁ ପୁଅମାନେ ତାଙ୍କୁ ଜଳଯାତ୍ରା କରିବାକୁ ବାରଣ କଲେ । ସେମାନେ ବାପାଙ୍କ ସାଙ୍ଗରେ ଯାଇ ବ୍ୟବସାୟର କାଇଦା ଜାଣି ଯାଇଥିଲେ । ତେଣୁ ଭଲ ବ୍ୟବସାୟ କରିପାରୁଥିଲେ । ଆଗରୁ ବଣିଜରେ ଧନ ଖଟାଇବାକୁ ନନ୍ଦକିଶୋରଙ୍କୁ ବହୁ କଷ୍ଟ କରିବାକୁ ପଡୁଥିଲା । ସେଥିପାଇଁ ପାଖଆଖର ଲୋକଙ୍କ ଠାରୁ ସେ ଧନ ନେଉଥିଲେ କରଜ କରି । ବଣିଜ କରି ଫେରିଲା ପରେ ସେଇ ଧନକୁ ଆହୁରି ବଢ଼ାଇ ଧନ ଦେଇଥିବା ଲୋକଙ୍କୁ ଫେରସ୍ତ ଦେଉଥିଲେ । ଯିଏ ତାଙ୍କୁ କରଜ ଆକାରରେ ଧନ ଦେଉଥିଲେ ସେମାନେ ଭାରି ଖୁସି । କାରଣ ବାହାରେ କାହାକୁ ଦେଲେ ଯେତିକି ସୁଧ ମିଳିଥାନ୍ତା ତା'ଠାରୁ ନନ୍ଦକିଶୋର ଯଥେଷ୍ଟ ଅଧିକ ଦେଇ ତାଙ୍କୁ ଫେରାଉ ଥିଲେ । ପରେ ନନ୍ଦକିଶୋରଙ୍କର ଧନ ଆବଶ୍ୟକ ନ ହେଲେ ମଧ୍ୟ ଯେଉଁ ଲୋକମାନେ ତାଙ୍କୁ ଧନ ଦେଉଥିଲେ ସେମାନେ ନିଜ ତରଫରୁ ତାଙ୍କ ଧନ ବଣିଜରେ ଖଟେଇବା ପାଇଁ ତାଙ୍କୁ ଅନୁରୋଧ କଲେ । ଅଧିକ ଧନ ଖଟେଇ ଜିନିଷ କିଣିବାକୁ ହେଲେ ଅଧିକ ଜାହାଜ ଦରକାର, ତେଣୁ ସେ ଏହା ଭିତରେ ଅଧିକ ଆଉ ଚାରିଖଣ୍ଡ ଜାହାଜ କରି ସାରିଥିଲେ । ପ୍ରତ୍ୟେକ ପୁଅଙ୍କ ଦାୟିତ୍ୱରେ ଦୁଇଖଣ୍ଡ ଲେଖାଁ ଜାହାଜ ଥିଲା । ମାଝୀ (ଯେଉଁମାନେ ଜାହାଜରେ ଅହୁଲା ମାରନ୍ତି) ମାନେ ବଣିଜ କରିବାରେ ବହୁତ ସାହାଯ୍ୟ କରୁଥିଲେ ।

ନନ୍ଦକିଶୋରଙ୍କର ସାନପୁଅ ଯୁଗଳ କିଶୋର ବଣିଜ ସାରି ଫେରୁଥିବା ସମୟରେ ତାଙ୍କ ମୁଣ୍ଡରେ କାହିଁକି କେଜାଣି ଗୋଟିଏ ଦୁଷ୍ଟବୁଦ୍ଧି ଆସିଲା । ଘରକୁ ଫେରି ସବୁ ପୁଅ ବାପାଙ୍କୁ ଲାଭର ହିସାବ ଠିକ୍‌ଠିକ୍ ଦେଇଦେଲା ବେଳକୁ ଯୁଗଳ



Digitized by srujanika@gmail.com

କିଶୋର କହିଲେ ଯେ ତାଙ୍କର ଦୁଇଟି ଟଙ୍କାବିଡ଼ା ନାହିଁ । କେଉଁଠି ପାଣିରେ ଖସିଗଲା । ସିଏ ଭାବିଥିଲେ ଯେଉଁ ଲୋକମାନେ ପଇସା ଖଟେଇବାକୁ ତାଙ୍କୁ ଦେଇଥିଲେ ବାପା ସେମାନଙ୍କୁ ବୋଧେ ଫେରାଇବେ ନାହିଁ । କିନ୍ତୁ ନନ୍ଦକିଶୋର ସେପରି କଲେ ନାହିଁ । ସେ ଯୁଗଳ କିଶୋରଙ୍କ ବାକି ପଇସାରୁ ଧନ ଖଟେଇବାକୁ ଦେଇଥିବା ଲୋକମାନଙ୍କୁ ଆଗ ତାଙ୍କ ଧନକୁ ଅଧିକ କରି ଫେରାଇଲେ । ଏହା ଦେଖି ଯୁଗଳଙ୍କ ମୁହଁ ଶୁଖି ଗଲା । ବଣିକ ହିସାବରେ ସେ ଯେଉଁ ବୁଦ୍ଧି କରିଥିଲେ ତାହା କାମ ଦେଲାନାହିଁ । ଏହା ଦେଖି ବାପା ତାଙ୍କୁ ବୁଝାଇ କହିଲେ, 'ଅସୁବିଧା ସମୟରେ ଯେଉଁମାନେ ଆମକୁ ସାହାଯ୍ୟ କରିଛନ୍ତି ସେମାନଙ୍କ ବିଶ୍ୱାସ ରକ୍ଷାକରିବା ଆମର ପ୍ରଥମ ଦାୟିତ୍ୱ । ଅଳ୍ପସମୟ ପାଇଁ ଯୁଗଳ କିଶୋରଙ୍କ ମନରେ ଆସିଥିବା ଖଳ ଚିନ୍ତା ଦୂରେଇ ଗଲା । ସେ ବାପାଙ୍କ ମହନୀୟତା ଦେଖି ନିଜର ଭୁଲ୍‌କୁ ମାନିଗଲେ ଯେ ସେ ତାଙ୍କୁ ମିଛ କହୁଥିଲେ । ବାପା ଉତ୍ତର ଦେଲେ ଯେ ସେ ଜାଣନ୍ତି । ଯୁଗଳ କିଶୋର ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ ଯେ ବାପା ସବୁ ଜାଣି ମଧ୍ୟ ତାଙ୍କୁ ଗାଳି କଲେ ନାହିଁ । ସେ ମନେମନେ ଲଜ୍ଜିତ ହେଲେ । ବାପାଙ୍କ ନିକଟରେ ତାଙ୍କ ମଥା ନଇଁଗଲା । ଉତ୍ତମ ବଣିକ ହେବାପାଇଁ ହେଲେ ପ୍ରଥମେ ବିଶ୍ୱାସ ରକ୍ଷା କରିବାକୁ ହୁଏ ଏହି କଥାଟି ସେ ବାପାଙ୍କ ଠାରୁ ଶିଖିଲେ । ତା' ପରଠୁ ଏପରି କାର୍ଯ୍ୟ ସେ ଆଉ କେବେହେଲେ କଲେନାହିଁ । ସତ୍ ଉପାୟରେ ନିଜର ବାଣିଜ୍ୟବ୍ୟବସାୟରେ ମନ ପ୍ରାଣ ଢାଳି ଦେଲେ । କିଛିଦିନ ପରେ ତାଙ୍କ ବାପାଙ୍କର ଦେହାନ୍ତ ହୋଇଗଲା । ଜଣେ ଉପଯୁକ୍ତ ବଣିକ ହେବାପାଇଁ ଯେଉଁ ଶିକ୍ଷା ସେ ଦେଇଯାଇଥିଲେ ପୁଅମାନେ ତାହା ସ୍ମରଣ କରୁଥିଲେ । ଯୁଗଳ କିଶୋର ତାଙ୍କୁ ମନେପକାଇ ଲୁହ ଗଡ଼ାଉ ଥିଲେ ।





Digitized by srujanika@gmail.com

# କର୍ମର ମହତ୍ତ୍ୱ

ଜଣେ କୃଷକ ଜମିରେ ହଳ କରୁଥାଏ । ଦିନସାରା କଠିନ ପରିଶ୍ରମରେ ଥକିଗଲା ପରେ ତାକୁ ନିଦ ଆସିଯାଏ । ରାତିରେ ସେ ଗାଢ଼ ନିଦ୍ରାରେ ଶୋଇପଡ଼େ । ଭୋରରୁ ଉଠି ସନ୍ଧ୍ୟା ପର୍ଯ୍ୟନ୍ତ କାମ କରେ । ସେ ଯେତେବେଳେ ଘର ଠାରୁ ବାହାରି କ୍ଷେତକୁ ଆସେ ବାଟରେ ମନ୍ଦିର ପଡ଼େ । ସେ ମନ୍ଦିରକୁ ଦୂରରୁ ଦେଖେ । ସେଠାକୁ ଯାଇପାରେ ନାହିଁ । କାରଣ କ୍ଷେତରେ ପହଞ୍ଚିବାକୁ ସେ ତରତର ଥାଏ । ସେଇ ବାଟ ଦେଇ ପୂଜକ ମହାଶୟ ମନ୍ଦିର ଆସନ୍ତି । ସେ ସ୍ନାନ କରି ଚନ୍ଦନ ଲଗାଇ ମନ୍ତ୍ର ଉଚ୍ଚାରଣ କରି ଆସନ୍ତି । କୃଷକଟି ତାଙ୍କୁ ଜୁହାର ହୁଏ । ଦିନେ କୃଷକ ମୁଣ୍ଡରେ ପଶିଲା ଯେ ତାକୁ ତ ମନ୍ଦିର ଯିବାକୁ ବେଳ ହେଉନାହିଁ । ସେ ଆଉ ସ୍ୱର୍ଗଲାଭ କରିପାରିବ ନାହିଁ । ତା' ଭାଗ୍ୟରେ ଏହା ନାହିଁ । ଏହା ଭାବିଭାବି





Digitized by srujanika@gmail.com

ମନଦୁଃଖ କଲା । ମୁହଁ ଶୁଖାଇ ଘରୁ କାମକୁ ବାହାରିଲା । ତା'ର ସ୍ତ୍ରୀ ସ୍ୱାମୀର ମୁହଁ ଶୁଖି ଯିବାର କାରଣ ପଚାରିଲା । କୃଷକଟି ସ୍ୱର୍ଗଲାଭ କରିପାରିବ ନାହିଁ ବୋଲି ମନଦୁଃଖ କରୁଥିବାରୁ ସ୍ତ୍ରୀ ମଧ୍ୟ ତା' ଦୁଃଖରେ ଦୁଃଖୀ ହେଲା । ସେ ପରାମର୍ଶ ଦେଲା ଯେ କାମ ବନ୍ଦକରି ମଝିରେ ମଝିରେ ମନ୍ଦିରକୁ ଯାଇ ଠାକୁର ଦର୍ଶନ କରିଆସିଲେ କିଛି ଅସୁବିଧା ନାହିଁ । କୃଷକ ମନକୁ ଯଦିଓ କଥାଟା ପାଇଲା କିନ୍ତୁ କାମ ବନ୍ଦ କରିବା କଥାଟା ସେ ଗ୍ରହଣ କରିପାରୁ ନଥିଲା । ଦିନେ କାମ ବନ୍ଦ କଲେ ସେଦିନର କାମ ବାକି ହୋଇ ରହିଯିବ । ତା' ପରଦିନ ଏତେ କାମ ଶେଷ ହୋଇପାରିବ ନାହିଁ । ସେ ଯେ କେବଳ କ୍ଷେତରେ କାମକରି ପେଟ ପୋଷେ ତାହା ନୁହେଁ । ତା' ଘରକୁ ଲାଗି ରହିଥିବା ବାଡ଼ିରେ କିଛି ପନିପରିବା ଲଗାଏ । ସେଥିରୁ ବାହାରୁ ଥିବା ପନିପରିବାରେ ତାଙ୍କ ପରିବାରର ପରିବା ଖର୍ଚ୍ଚ ମଧ୍ୟ ଉଠିଯାଏ । ଆଳୁ, ବାଇଗଣ, ଭେଣ୍ଡି, ଝୁଡୁଙ୍ଗ, ଜହ୍ନି, ବିଲାତିବାଇଗଣ, ଛଚିନ୍ଦ୍ରା, ଲାଉ, ପାଣିକଖାରୁ, କଖାରୁ, ପୋଇ ଇତ୍ୟାଦି କେତେପ୍ରକାରର ଜିନିଷ ଋତୁ ଅନୁସାରେ ଚାଷକରେ । ବର୍ଷସାରା ସେଇଠୁ ବାହାରୁ ଥିବା ପରିବାରୁ ସେମାନେ ଚଳନ୍ତି । ବାହାରୁ କିଣିବାକୁ ପଡ଼େ ନାହିଁ । ଏଥିପାଇଁ ତାକୁ ଓ ତା'ର ସ୍ତ୍ରୀକୁ କଠିନ ପରିଶ୍ରମ କରିବାକୁ ପଡ଼େ ।

କୃଷକଟି କ୍ଷେତକୁ ଯାଇ କାମ କରିବା ଓ ଘର ପାଖକୁ ଲାଗିଥିବା ବାଡ଼ିରେ କାମ କରିବାରେ ଲାଗିଥିବା ବେଳେ ତା'ର ସ୍ତ୍ରୀ ଘରପାଖ ବାଡ଼ିରେ କାମ କରିବାରେ ସ୍ୱାମୀକୁ ସାହାଯ୍ୟ କରିବା, ରନ୍ଧାବଢ଼ା କାମ କରିବା, ପିଲା ଦୁଇଟିକୁ ସମ୍ଭାଳି ତାଙ୍କ ଯତ୍ନ କରିବାରେ ସମୟ କଟାଏ ।

ପୂଜକ ମହାଶୟଙ୍କର ପ୍ରତିଦିନ ମନ୍ଦିର ଗଲାବେଳେ ଓ ଫେରିଲା ବେଳେ କୃଷକ ସହିତ ଦେଖାହୁଏ । ସେ ଲକ୍ଷ୍ୟକଲେ କୃଷକଟି ପୂର୍ବରୁ ଯେପରି ପ୍ରଫୁଲ୍ଲ ଭାବରେ ତାଙ୍କୁ ଜୁହାର କରୁଥିଲା ଏବେ ଆଉ ସେପରି କରୁନାହିଁ । ତା' ମୁହଁରେ ହସ ନାହିଁ କି ସତେଜତା ନାହିଁ । ସେ କିଛିଦିନ ଚୁପ୍‌ଚାପ୍ ଏହା ଲକ୍ଷ୍ୟକଲେ । ଦେଖିଲେ ଦିନେ କି ଦୁଇଦିନ ନୁହେଁ କୃଷକଟି କାହିଁକି ସବୁଦିନ ମନଦୁଃଖ କରୁଛି ।



Digitized by srujanika@gmail.com

ବୋଧହୁଏ ତା'ର କିଛି ଅସୁବିଧା ହୋଇଛି କି ବିପଦ ପଡ଼ିଛି । ନଚେତ ସବୁଦିନ ହସହସ ମୁହଁ କରିଥିବା ଏହି ସରଳ କୃଷକଟି କାହିଁକି ମନରେ ଦୁଃଖ କରନ୍ତା ? ଦିନେ ସେ ସିଧାସଳଖ କୃଷକକୁ ଏହାର କାରଣ ପଚାରିଲେ । କୃଷକ ଏବଂ ତା'ର ସ୍ତ୍ରୀ ଭାରି ସରଳ ହୃଦୟର ଥିଲେ । ପୂଜକଙ୍କୁ କୃଷକଟି ତା' ମନଦୁଃଖର କାରଣ କହିଲା । ଜୀବନସାରା ତା'ର କାମ କରିକରି କଟି ଯାଉଛି । ସେ ଆଉ ମନ୍ଦିର ଯାଇ ଦେବଦର୍ଶନ କରିପାରିବ ନାହିଁ କି ତା'ର ସ୍ୱର୍ଗଲାଭ ହୋଇପାରିବ ନାହିଁ । ତା'ର ସ୍ତ୍ରୀ ମଧ୍ୟ ଏଥିପାଇଁ ଦୁଃଖରେ ଅଛି । ଏହା ଜାଣି ପୂଜକ ମହାଶୟ ହସିଲେ । ତାଙ୍କର ଅନ୍ତରରେ କୃଷକଟି ପ୍ରତି ସ୍ନେହଶ୍ରଦ୍ଧା ରହିଥିଲା । ସେ ତାକୁ ବୁଝାଇଲେ, "ତମେ ନିରଳସ ଭାବରେ ତୁମର କର୍ମ କରୁଛ । କର୍ମ ହିଁ ଈଶ୍ୱର । ଭଗବାନ୍ ସବୁଠାରେ ଅଛନ୍ତି । ଯିଏ ନିଜ କର୍ମକୁ ଠିକ୍ ଭାବରେ କରେ ତା'ର ନିଶ୍ଚୟ ସ୍ୱର୍ଗଲାଭ ହେବ । ଏଥିରେ ମନଦୁଃଖ କରିବାର କିଛି ନାହିଁ । ଯେଉଁମାନେ ନିଜ କାମରେ ହେଳା କରନ୍ତି ବା ଠିକ୍ ଭାବରେ ନିଜର କାମ କରନ୍ତି ନାହିଁ ସେମାନେ ମନ୍ଦିର ଯାଇ ଯେତେ ଦର୍ଶନ କଲେ ମଧ୍ୟ ତାଙ୍କର ସ୍ୱର୍ଗଲାଭ ହୋଇପାରିବ ନାହିଁ । ଏହିପରି କହି ପୂଜକ ମହାଶୟ ନିଜ ବାଟରେ ଗଲେ । କୃଷକଟି ସ୍ୱର୍ଗଲାଭର ପ୍ରକୃତ ଅର୍ଥ ବୁଝିଲା ପରେ ତା'ର ଦୁଃଖ ଆଉ ରହିଲା ନାହିଁ । ସେ ଘରେ ଯାଇ ତା'ର ସ୍ତ୍ରୀକୁ ଏକଥା କହିଲା । ତା' ସ୍ତ୍ରୀ ସ୍ୱାମୀ ଠାରୁ ସବୁକଥା ଶୁଣିଲା ପରେ ଭଗବାନଙ୍କୁ ସ୍ମରଣ କରି ହାତଯୋଡ଼ି ଜୁହାର ହେଲା । ସ୍ୱାମୀ ସ୍ତ୍ରୀଙ୍କ ମନରେ କିଛିଦିନ ପାଇଁ ଦେଖା ଦେଇଥିବା ଦୁଃଖ ଦୂର ହୋଇଗଲା । ସେମାନେ ପ୍ରଫୁଲ୍ଲ ମନରେ ଯେ ଯାହାର କର୍ମ କରିବାରେ ଲାଗିଲେ । ପୂଜକ ମହାଶୟ ତା' ପରଦିନ ଠାରୁ ଲକ୍ଷ୍ୟକଲେ ଯେ କୃଷକଟି ତାଙ୍କୁ ହସହସ ମୁହଁରେ ଜୁହାର ହେଉଛି । ତାଙ୍କର ମନରେ ଆନନ୍ଦ ସୃଷ୍ଟିହେଲା, ଯେ କୃଷକଟି ତାଙ୍କର କଥାକୁ ପ୍ରକୃତରେ ବୁଝି ପାରିଛି । ତେଣୁ କର୍ମ ହିଁ ଈଶ୍ୱର । ଯିଏ କର୍ମରେ ନିଜକୁ ନିୟୋଜିତ କରି ରଖେ ତା'ର ସ୍ୱର୍ଗଲାଭ ହୋଇଥାଏ ।





Digitized by srujanika@gmail.com

# ସନ୍ତାନ ସ୍ନେହ

ଯୁବକଟିର ନାମ ଥିଲା ନାରାୟଣ । ଚନ୍ଦ୍ରପୁର ଗ୍ରାମର ଅଧିବାସୀ ନାରାୟଣର ବାପାମାଆ । ସେମାନେ ଦୁହେଁ ଶିକ୍ଷିତ ହୋଇ ନଥିଲେ ମଧ୍ୟ ଏକମାତ୍ର ପୁତ୍ର ନାରାୟଣକୁ ଶିକ୍ଷିତ କରାଇବାକୁ ଅନେକ ଚେଷ୍ଟା କରିଥିଲେ । ମୂଲ ମଜୁରି ଲାଗି ଚଳୁଥିବା ନାରାୟଣର ବାପା ପୁଅଟିକୁ ପଢ଼ାଇବାର ଆଶା କରିକରି ଶେଷରେ ନିରାଶ ହୋଇଥିଲା । ତା'ର ମାଆଟି ପୁଅର ମନୁଦୁଃଖ ହେବା ଭୟରେ ତାକୁ ଗାଳିମନ୍ଦ କରୁ ନଥିଲା । ଭିତରେ କିନ୍ତୁ କଷ୍ଟ ପାଉଥିଲା । ନାରାୟଣର ଏସବୁକୁ ଖାତିର ନ ଥିଲା । ସେ ହୁଡୁମାପିଲାଙ୍କ ସାଥୀରେ ସାଙ୍ଗହୋଇ ବୁଲୁଥିଲା । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଠେଲିପେଲି ହୋଇଗଲା ପରେ ସ୍କୁଲ୍ ବନ୍ଦକରି ରହିଲା ଯେ





Digitized by srujanika@gmail.com

ରହିଲା । ବାପମା' ଯେତେ ବୁଝାଇଲେ କାନକୁ ନେଲା ନାହିଁ । ସେମିତି ଗାଳେଇ ଗାଳେଇ ରହିଗଲା । ସେମାନେ କପାଳ ଆଦରି ରହିଲେ । ନାରାୟଣର ନାମଟା ଗାଆଁରେ ଅପଭ୍ରଂଶ ହୋଇ କ୍ରମେକ୍ରମେ ନାରଣ ଏବଂ ଶେଷରେ 'ନାରଣା' ବା 'ନାରେଣା'ରେ ପହଞ୍ଚିଗଲା । ଏହି ନାମରେ ସେ ସମସ୍ତଙ୍କ ପାଖରେ ପରିଚିତି ହାସଲ କଲା । ବାପାମାଆଙ୍କର ଝାଳବୁହା ଧନରେ ଖାଇପିଇ ବଢ଼ି ଯୁବକ ହେଲା ନାରେଣା ।

ବର୍ଷାଋତୁ ହୋଇଥାଏ । ଶ୍ରାବଣ ମାସର ଘୋର ବରଷା । ସାଙ୍ଗମାନଙ୍କ ସହିତ ନାରଣା ଯାଇଥାଏ ମାଛ ଧରିବାକୁ । ରାତି ହୋଇଗଲାଣି । ତଥାପି ଫେରିନି । ବାପା ମା' ଦୁଇଜଣଙ୍କର ଚିନ୍ତାର ସୀମା ନଥାଏ । ତା' ବାପା ଛତାଟିଏ ଧରି ଟର୍ଚ୍ଚ ଧରି ଘରୁ ବାହାରୁ ଥାଏ । ଏତିକିବେଳେ ନାରଣା ଆସି ପହଞ୍ଚି ଗଲା ଘରେ । ବାପମାଆଙ୍କ ମୁଣ୍ଡରୁ ଗୋଟାଏ ମସ୍ତ ବୋଝ ଯେପରି ଓହ୍ଲାଇ ଗଲା । ପୁଣି ଜିଦ୍‌କଲା ଯେ ସାଙ୍ଗେସାଙ୍ଗେ ମାଛକୁ ତରକାରୀ କରିଦେବାକୁ ପଡ଼ିବ । ତା' ମାଆଟି ବିଚରା ନସରପସର ହୋଇ ସେଇ ଓଦା କାଠରେ ଚୁଲି ଫୁଙ୍କିଫୁଙ୍କି ରୋଷେଇ କଲା । ଭାତ, ମାଛ ତରକାରୀ ଖାଇ ରାତିରେ ଶୋଇଲା ନାରେଣା । ତା' ପରଦିନ ସକାଳୁ ଆଉ ବିଛଣାରୁ ଉଠି ନ ପାରେ । ଦେହ ଗୋଟାପଣେ ଘୋଳାବିନ୍ଧା ହେଉଛି । ଜୋର୍‌ରେ ଶୀତ ଲାଗୁଛି । ଜ୍ୱର ଭର୍ତ୍ତି ହୋଇଛି ।

ବାପା ମାଆ ଦୁଇଜଣ ଲାଗି ପଡ଼ିଲେ ପୁଅର ସେବାରେ । ନାରଣାର ମାଆ ଗୋଟିଏ ଛୋଟଗିନାରେ ସୋରିଷତେଲ ଓ ରସୁଣ ଫୁଟାଇ ଆଣି ଦେଲା । ତା' ବାପା ନାରଣାର ଗୋଡ଼, ହାତ, ଦେହ ଭଲକରି ଘଷିଲା । ମାଆ ପଥ୍ୟ ରାନ୍ଧି ଖୁଆଇଲା । ଗାଆଁର ଛୋଟିଆ ଡାକ୍ତରଖାନାରେ ଥିବା ଡାକ୍ତରଙ୍କ ନିକଟକୁ ଖବର ଦେବାରେ ସେ ଘରେ ଆସି ପହଞ୍ଚିଲେ । ନାଡ଼ି ଦେଖି ଔଷଧ ଦେଲେ । ପ୍ରବଳ ଥଣ୍ଡା ଧରି ନେଇଛି । ମୁଣ୍ଡରେ ପାଣି ରହି ଏପରି ହୋଇଛି ବୋଲି କହିଲେ । ଓଦା ନ ହେବାକୁ ସତର୍କ କରିଗଲେ । ବାପା ମୂଲକୁ ନ ଗଲେ ଘର ଅଚଳ । ତେଣୁ ସେ ବାଧହୋଇ ମୂଲକୁ ଯାଏ । ସେଠାରୁ ଫେରିଲା ପରେ ପୁଅର ସେବାରେ



Digitized by srujanika@gmail.com

ଲାଗେ । ମାଆ ସାରାଦିନ ଖଟିଖଟି ରନ୍ଧାବଢ଼ା, ବାଡ଼ିବଗିଚ୍ଛ, ଗାଈଗୋରୁ, ପୁଅର ସେବାରେ ଲାଗିଥାଏ । ନାରେଣା ଶୋଇ ଶୋଇ ସବୁ ଦେଖେ । ଲଗାତାର ପାଞ୍ଚଦିନ ଘରେ ସବୁସମୟ ରହିବା ଏଇଟା ତା'ର ପ୍ରଥମ । ଘରେ ଯେ ଏତେ କାମ ଅଛି, ଦିନସାରା କାମରେ ଲାଗି ରହିବାକୁ ପଡ଼େ ଏକଥା ତା'ର ଭାବନାର ବାହାରେ ଥିଲା । ବାପ ମାଆଙ୍କର ସନ୍ତାନ ପ୍ରତି ଥିବା ସ୍ନେହକୁ ସେ ଏବେ ଅନୁଭବ କରିପାରୁ ଥିଲା । ତା' ମନରେ ଦୁଃଖ ଆସୁଥିଲା ଯେ ସେ ସେମାନଙ୍କ କଥା କାହିଁକି ମାନି ନାହିଁ । ସେମାନେ ତା' ଲାଗି କେତେ ଛଟପଟ ହେଉଛନ୍ତି ଛୋଟ ଅବସ୍ଥାରେ ବୁଝିଥିଲେ ସେ କେବେହେଲେ ସ୍କୁଲ୍ ଯିବା ବନ୍ଦ କରି ନଥାନ୍ତା । ମାଆ ଆସି ମୁଣ୍ଡ ପାଖରେ ବସି କପାଳ ମୁଣ୍ଡ ଆଉଁସୁ ଥିବା ବେଳେ ନାରଣା ଆଖିକୁ ଲୁହ ଆସି ଯାଉଥିଲା । ମାଆ ତା' ଆଖିର ଲୁହକୁ ଦେଖି ପକାଇ ଛାନିଆ ହୋଇ ପଚାରିଲା, "ମୁଣ୍ଡ ବିନ୍ଧୁଛି କିରେ ବାପ ?" ନାରଣା ମିଛରେ ମୁଣ୍ଡ ଟୁଙ୍ଗାରିଲା । ଭିତରେ ଭିତରେ ସେ ଅନୁତାପ କରୁଥିଲା ।

ଜ୍ୱର ଛାଡ଼ିଯିବା ପାଇଁ ନାରଣା ଯାଇ ନିକଟସ୍ଥ ବିଦ୍ୟାଳୟର ଜଣେ ଶିକ୍ଷକଙ୍କ ସହିତ ନିଜେ କଥାବାର୍ତ୍ତା କଲା । ସେ ତାକୁ ପଢ଼ାରେ ସାହାଯ୍ୟ କରିବାକୁ ଖୁସିରେ ରାଜି ହେଲେ । ଘରପାଖ ବାଡ଼ିବଗିଚ୍ଛ କାମ ନାରଣା ଆଉ ମାଆକୁ କରାଇ ଦେଲା ନାହିଁ । ନିଜେ କଲା । ପ୍ରତିଦିନ କିଛି ସମୟ ସେହି ଶିକ୍ଷକଙ୍କ ନିକଟକୁ ରାତିରେ ପାଠ ପଢ଼ିବାକୁ ଗଲା । ମନରୁ ପାଠ ପ୍ରତି ଥିବା ଭୟ, ଲାଜସବୁ ତ୍ୟାଗ କରି କାମରେ ଲାଗିଗଲା । ତା'ର ବାପା ମାଆ ଦୁଇଜଣ ନାରଣାର ପରିବର୍ତ୍ତନ ଦେଖି ଆନନ୍ଦରେ ଗାଆଁ ଜାଗୁଳାଇ ଠାକୁରାଣୀଙ୍କ ପାଖରେ ଭୋଗ କରାଇଲେ । ଯେଉଁଦିନ ନାରଣା ହାଇସ୍କୁଲ୍ ପରୀକ୍ଷାରେ ପାସ୍ କରିବା ଖବରଟା ଜଣାପଡ଼ିଲା ସେଦିନ ବାପାମାଆଙ୍କ ସହିତ ସ୍କୁଲ୍ ଶିକ୍ଷକ ତଥା ଗାଆଁ ଲୋକେ ମଧ୍ୟ ଆନନ୍ଦିତ ହୋଇଗଲେ । ନାରଣାର ନାମ ପୁଣି 'ନାରାୟଣ'କୁ ଫେରିଆସିଲା । ପିତାମାତାଙ୍କର ସନ୍ତାନ ସ୍ନେହକୁ ଅନୁଭବ କରି ଭଲପିଲା ହେଲେ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି ।





Digitized by srujanika@gmail.com

# ଅଦ୍ଭୁତ ବିଚାର

ଗୋଟିଏ ରାଜ୍ୟର ରାଜାଙ୍କର ମୃତ୍ୟୁ ହୋଇଯିବାରୁ ତାଙ୍କ ପୁତ୍ରଙ୍କୁ ରାଜସିଂହାସନରେ ଅଭିଷିକ୍ତ କରାଗଲା । ସିଂହାସନରେ ବସି ଶାସନ କଳାପରେ ନୂତନ ରାଜା ପିତାଙ୍କର ରାଜ୍ୟ ଶାସନ ପଦ୍ଧତିକୁ ମନେପକାଇ ଭାବିଲେ, ପିତା ପ୍ରଜାଙ୍କ ହିତସାଧନରେ ଅଧିକ ଦୃଷ୍ଟି ଦେବା ଦ୍ୱାରା ସାମ୍ରାଜ୍ୟ ବିସ୍ତାର କରିପାରିଲେ ନାହିଁ । ସାମ୍ରାଜ୍ୟ ବିସ୍ତାର ନ ହେଲେ ଅଧିକ ଭୂଖଣ୍ଡ ତାଙ୍କ ଅଧୀନକୁ ଆସିବ କିପରି ? ଚାରିଆଡ଼େ ଜନସାଧାରଣ ତାଙ୍କୁ ବୀର ବୋଲି ଜାଣିବେ କିପରି ? ଏହିପରି ଚିନ୍ତାକରି ସେ ନିଜର ସୈନ୍ୟବାହିନୀ ପାଇଁ ଅଧିକ ଧନ ଖର୍ଚ୍ଚକରି ତାଙ୍କୁ





Digitized by srujanika@gmail.com

ଶକ୍ତିଶାଳୀ କଲେ । ଅଧିକ ସୈନ୍ୟ ନିଯୁକ୍ତି ପାଇଲେ । ଯୁଦ୍ଧ ପ୍ରଶିକ୍ଷଣ ଦେବାକୁ ଭଲଭଲ ସେନାଧକ୍ଷଙ୍କୁ ଆଦେଶ ଦିଆଗଲା । କିଛିଦିନ ଅନ୍ତେ ତାଙ୍କର ଏକ ଶକ୍ତିଶାଳୀ ସେନାବାହିନୀ ପ୍ରସ୍ତୁତ ହୋଇଗଲା । ସେ ବିଭିନ୍ନ ରାଜ୍ୟ ସହିତ ଯୁଦ୍ଧକରି ଜୟଲାଭ କଲେ ଏବଂ ନିଜର ସାମ୍ରାଜ୍ୟ ବିସ୍ତାର କରିବାରେ ଲାଗିପଡ଼ିଲେ । ଏବେ ସେ ଲୋକ ମୁଖରେ ସମ୍ରାଟ ରୂପେ ବିଦିତ ହେଲେ ।

ମଝିରେ ମଝିରେ ଅବସର ମିଳିଲେ ସମ୍ରାଟଙ୍କର ଜଣେ ବନ୍ଧୁ ତାଙ୍କର ମନୋରଞ୍ଜନ କରିବାରେ ଲାଗି ଯାଆନ୍ତି । ସମ୍ରାଟ୍‌ଙ୍କର ସିଏ ପିଲାଦିନର ସାଙ୍ଗ ହୋଇଥିବାରୁ ରାଜା ହେବାପରେ ସେ ତାଙ୍କ ରାଜକର୍ମଚାରୀ ଭାବରେ ନିଯୁକ୍ତ କରିଥିଲେ । ରାଜକର୍ମଚାରୀ ହେଲେ ମଧ୍ୟ ତାଙ୍କର ମୁଖ୍ୟ କାର୍ଯ୍ୟ ସମ୍ରାଟଙ୍କର ମନୋରଞ୍ଜନ କରିବା ହିଁ ଥିଲା । ସମ୍ରାଟ୍ ଏଥିରେ ସନ୍ତୁଷ୍ଟ ଥିଲେ । କ୍ଳାନ୍ତି ଦୂର କରିବାରେ ଏହି ମନୋରଞ୍ଜନ କଥା ତାଙ୍କ ନିମନ୍ତେ ଆବଶ୍ୟକ ଥିଲା ବୋଲି ସେ ଭାବୁଥିଲେ । ବିଭିନ୍ନ ହସକଥା ଶୁଣି ସମ୍ରାଟ ପ୍ରଫୁଲ୍ଲତା ଅନୁଭବ କରୁଥିଲେ ।

ଦିନକର କଥା, ସମ୍ରାଟ୍ ଶିକାର ଉଦ୍ଦେଶ୍ୟରେ ଅଳ୍ପକେତେକ କର୍ମଚାରୀଙ୍କୁ ନେଇ ଘନ ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ । ତାଙ୍କର ବନ୍ଧୁ (ମନୋରଞ୍ଜନ କରୁଥିବା)ତାଙ୍କ ସହିତ ଯିବାକୁ କହିଲେ । ସେ ଶିକାର କରିବା ଆଦୌ ଜାଣି ନଥିଲେ । କେବଳ ବନ୍ଧୁ ବଳରେ ବାହାରିଲେ । ସମ୍ରାଟ୍ ତାଙ୍କ କର୍ମଚାରୀମାନଙ୍କୁ ତାଙ୍କ ବନ୍ଧୁଙ୍କର ଦାୟିତ୍ୱ ଉଚିତ ଭାବରେ ଦେଖାଶୁଣା କରିବାକୁ ତାଗିଦ୍ କରିଦେଲେ । ଶିକାର ନ ଜାଣିଥିବା ଲୋକ ସାଙ୍ଗରେ ଆସିବାକୁ କର୍ମଚାରୀମାନେ ପସନ୍ଦ କରୁ ନଥିଲେ । କିନ୍ତୁ ସମ୍ରାଟ୍‌ଙ୍କ ଭୟରେ ମୁହଁ ଖୋଲି କେହି କିଛି କହିପାରିଲେ ନାହିଁ ।

ଗଛ ଉପରେ ମଞ୍ଚା ବନ୍ଧା ହେଲା । ସାଙ୍ଗରେ ଆଣିଥିବା ଛେଳିଟିଏ ଗଛ ତଳେ ବନ୍ଧାଗଲା । ସେ ମେଁ ମେଁ କରୁଥାଏ । କିଛିସମୟ ପରେ ବାଘର ହେଣ୍ଟାଳ ଶୁଭିଲା । ସମ୍ରାଟ ଓ କର୍ମଚାରୀମାନେ ନିଜନିଜର ଧନୁତୀର ସଜାଡ଼ି ଧରିଥାନ୍ତି । ସମ୍ରାଟ୍‌ଙ୍କ ବନ୍ଧୁଟି ଡରରେ ଥରୁଥାଏ । କର୍ମଚାରୀମାନେ ତାକୁ ଡରିବାକୁ ମନା କରୁଥାନ୍ତି । ଖାଲି ଚୁପ୍‌ଚାପ୍ ହୋଇ ବସିବାକୁ କହୁଥାନ୍ତି । ହେଲେ ବାଘର ସ୍ୱର



Digitized by srujanika@gmail.com



ଯେତେ ନିକଟ ହୋଇ ଆସିଲା ସମ୍ରାଟ୍ ବନ୍ଧୁଟି ଅଧିକ ଛାନିଆ ହେବାରେ ଲାଗିଲା । ବାଘ ଗଛ ନିକଟକୁ ଛେଳିକୁ ନେବାକୁ ଆସିଲା ବେଳକୁ ବନ୍ଧୁଟି ତଳକୁ ଖସି ପଡ଼ିଲା । ସମ୍ରାଟଙ୍କ ତୀର ଲକ୍ଷ୍ୟଭ୍ରଷ୍ଟ ହୋଇଗଲା । ବାଘଟି ଛେଳିକୁ ନ ନେଇ ଏଇ ଲୋକଟି ତଣ୍ଟିକୁ ଚିପିଧରି ନେଇଯିବାକୁ ବାହାରିବାରେ ଜଣେ କର୍ମଚାରୀର ତୀର ଅବଶ୍ୟ ତାକୁ ଭେଦିଲା ଏବଂ ସେ ବିରାଟ ଚିତ୍କାର କରି ଛଟପଟ ହେବାରେ ଲାଗିଲା । ଏହି ସମୟରେ ଆଉ ଜଣେ କର୍ମଚାରୀ ତୀର ଯାଇ ବାଘକୁ ଭେଦ କଲା । ସେ ଏପଟସେପଟ ହୋଇ ପଡ଼ି ରହିଲା । ସମ୍ରାଟ୍ ଓ କର୍ମଚାରୀମାନେ ତଳକୁ ଓହ୍ଲାଇ ଦେଖିଲେ ସମ୍ରାଟ୍‌ଙ୍କ ବନ୍ଧୁ ଦେହରେ ଆଉ ଜୀବନ ନାହିଁ । ବନ୍ଧୁ ମୃତ୍ୟୁକୁ ରାଜା ସହଜରେ ବରଦାସ୍ତ କରିପାରିଲେ ନାହିଁ । ତାଙ୍କର ମନୋରଞ୍ଜନ ବର୍ତ୍ତମାନ କିଏ କରିପାରିବ ଭାବି ସେ କ୍ରୋଧିତ ହେଲେ ।

ସମସ୍ତେ ରାଜପ୍ରସାଦକୁ ଫେରିଲେ । ସଭା ବସିଲା । ବନ୍ଧୁର ମୃତ୍ୟୁରେ ରାଜା ବିଚଳିତ ହୋଇ ଯାଇଥିଲେ । ସେ ବିଚାର କଲେ ଯେ ତାଙ୍କ କର୍ମଚାରୀମାନେ



Digitized by srujanika@gmail.com

ବନ୍ଧୁର ମୃତ୍ୟୁ ପାଇଁ ଦଣ୍ଡ ପାଇବା ଉଚିତ । କାରଣ ସେମାନଙ୍କୁ ତା'ର ଦେଖାଶୁଣା ଦାୟିତ୍ୱ ଦିଆଯାଇଥିଲା । ସେମାନେ ଠିକ୍ ଭାବରେ ଦାୟିତ୍ୱ ତୁଲାଇ ଥିଲେ ତାଙ୍କର ବନ୍ଧୁ ମୃତ୍ୟୁମୁଖରେ ପଡ଼ି ନଥାନ୍ତା । ତେଣୁ ସେହି ଦାୟିତ୍ୱହୀନ କର୍ମଚାରୀଙ୍କୁ ପ୍ରାଣଦଣ୍ଡ ଦିଆଯିବ । ଏହି ଅଦ୍ଭୁତ ବିଚାର ଶୁଣି ସଭାସ୍ଥଳରେ ସଭିଏଁ ଆଶ୍ଚର୍ଯ୍ୟ ହେଲେ ସିନା କିନ୍ତୁ ସମ୍ରାଟଙ୍କୁ ମୁହଁ ଉପରେ କେହି କିଛି କରିପାରିଲେ ନାହିଁ ।





Digitized by srujanika@gmail.com

# ସ୍ୱର୍ଗଲାଭ

ଅଙ୍ଗଦେଶର ରାଜା ପ୍ରତାପଦେବ ଜଣେ ଉତ୍ତମ ଶାସକ ଥିଲେ । ତାଙ୍କ ରାଜ୍ୟ ଶାସନ ସମୟରେ ପ୍ରଜାମାନେ ସୁଖଶାନ୍ତିରେ କାଳ ଅତିବାହିତ କରୁଥିଲେ । ରାଜ୍ୟ ସୁଖସମୃଦ୍ଧିରେ ପୂର୍ଣ୍ଣ ହୋଇ ରହିଥିଲା । ତାଙ୍କର ରାଣୀ ପଦ୍ମିନୀ ଅତ୍ୟନ୍ତ ରୂପବତୀ ଓ ଗୁଣବତୀ ଥିଲେ । ରାଜା ଓ ରାଣୀ ଉଭୟେ ପ୍ରଜାମାନଙ୍କୁ ନିଜର ସନ୍ତାନ ପରି ସ୍ନେହ କରୁଥିଲେ ।

ଥରେ ରାଣୀ ପଦ୍ମିନୀ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ତାହା ହେଲା - ଏକ ସୁବର୍ଣ୍ଣପାଲିଙ୍କିରେ ବସାଇ ତାଙ୍କୁ ଦେବଦୂତ ପରି ମନେ ହେଉଥିବା କିଛି ବ୍ୟକ୍ତି





Digitized by srujanika@gmail.com

ଏକ ପାହାଡ଼ିଆ ଅଞ୍ଚଳକୁ ନେଇ ଯାଉଛନ୍ତି । ସେଠାରେ ଏକ ବିରାଟ ଝରଣା ଝରି ଯାଉଛି । ତାହାର ଜଳ କ୍ଷୀର ପରି ମନେ ହେଉଛି । ତାହା ଖୁବ୍ ସୁଗନ୍ଧଯୁକ୍ତ ଚତୁଃପାର୍ଶ୍ୱସ୍ଥ ବୃକ୍ଷ ଓ ଗୁଳ୍ମ ପୁଷ୍ପ ମଣ୍ଡିତ ହୋଇଯାଇଛନ୍ତି । ପୁଷ୍କରିଣୀରେ ପଦ୍ମଫୁଲ ଭର୍ତ୍ତି ହୋଇଯାଇଛି । ରାଣୀ ସେହି କ୍ଷୀର ପ୍ରାୟ ମନେ ହେଉଥିବା ଝରଣା ଜଳରେ ଅନେକ ସମୟ ସ୍ନାନ କଲାପରେ ତାଙ୍କ ଶରୀରରେ କେହି ଦିବ୍ୟ ବସ୍ତ୍ର, ଦିବ୍ୟ ଅଳଙ୍କାର ପିନ୍ଧାଇ ଦେଉଛନ୍ତି । ଏସବୁ ଆପେ ଆପେ ହୋଇଗଲା ପରି ଲାଗୁଛି । ସେ ଏଠି କୌଣସି ବ୍ୟକ୍ତିଙ୍କୁ ଦେଖିପାରୁ ନାହାନ୍ତି । ଏହି ସମୟରେ ରାଣୀଙ୍କର ନିଦ ଭାଙ୍ଗି ଯାଉଛି । ସେ ରାଜାଙ୍କୁ ଉଠାଇ ଏହି ସ୍ୱପ୍ନ ବିଷୟରେ ସବୁକଥା କହିଲେ ।

ତହିଁ ଆରଦିନ ସକାଳୁ ରାଜା ପ୍ରତାପଦେବ ସବୁଦିନ ପରି ରାଜସଭାକୁ ଗଲେ । ରାଜସଭାରେ ଅନେକ ପଣ୍ଡିତ ଜ୍ଞାନୀ ଥାଆନ୍ତି ।

ରାଜା ସେମାନଙ୍କୁ ରାଣୀ ଦେଖିଥିବା ଅଦ୍ଭୁତ ସ୍ୱପ୍ନ ସମ୍ବନ୍ଧରେ କହିଲେ ଏବଂ ତା'ର କାରଣ କ'ଣ ହୋଇପାରେ ଜାଣିବା ପାଇଁ ଇଚ୍ଛାକଲେ । ଏହା ସାଧାରଣ ସ୍ୱପ୍ନ ପରି ମନେ ହେଉନାହିଁ । ରାଜାସଭାରେ ଉପସ୍ଥିତ ସମସ୍ତ ଗୁଣୀଜ୍ଞାନୀ ପଣ୍ଡିତମାନେ ଏହି ସ୍ୱପ୍ନର କାରଣ ବାହାର କରିବାରେ ଲାଗିପଡ଼ିଲେ । ଅନେକ କଳ୍ପନାଜଳ୍ପନା ହେଲା । ଆଲୋଚନା ହେଲା । ବିଭିନ୍ନ ମତାମତ ପ୍ରକାଶ ପାଇବା ପରେ ଜଣେ ଉଚ୍ଚସ୍ତରୀୟ ପଣ୍ଡିତ ଏହାର ଅର୍ଥ ବାହାର କରି କହିଲେ ଯେ - "ରାଣୀଙ୍କର ଏକ ପୁତ୍ରସନ୍ତାନ ଜାତ ହେବ ଯିଏକି ଦେବତାଙ୍କ ପରି ରୂପବାନ, ଗୁଣବାନ୍ । ଜ୍ଞାନୀ ହେବ ଏବଂ ସମାଜର କଲ୍ୟାଣସାଧନ କରିବ, କିନ୍ତୁ ଗୋଟିଏ ଚିନ୍ତାର ବିଷୟ ହେଉଛି" ରାଜା ଅତ୍ୟନ୍ତ ଆକୁଳଚିତ୍ତରେ ପଚାରିଲେ - "ଶୀଘ୍ର କୁହନ୍ତୁ ପଣ୍ଡିତ ମହାଶୟ, ଚିନ୍ତାର ବିଷୟ କେଉଁ କଥା ?" ପଣ୍ଡିତ କହିଲେ - ଆପଣଙ୍କ ପୁତ୍ର ଅଧିକ ଦିନ ଆପଣଙ୍କ ନିକଟରେ ରହିପାରିବ ନାହିଁ । ସେ ଘରଦ୍ୱାର ଛାଡ଼ି ବନରେ ଯାଇ ତପସ୍ୟା କରିବ । ସନ୍ଥ ଭାବରେ ଦିନ କଟାଇବ । ସମସ୍ତେ ତାକୁ ମାନିବେ । ପୂଜା କରିବେ ।"



Digitized by srujanika@gmail.com

ରାଜା ରାଣୀଙ୍କୁ ପଣ୍ଡିତଙ୍କ ଭବିଷ୍ୟତ ଗଣନା ସମ୍ବନ୍ଧରେ କିଛି ଜଣାଇଲେ ନାହିଁ । ଅତ୍ୟନ୍ତ ଯତ୍ନର ସହିତ ରାଣୀଙ୍କୁ ରଖାଗଲା । ଯଥାସମୟରେ ରାଣୀଙ୍କ ଗର୍ଭରୁ ପୁତ୍ରସନ୍ତାନଟିଏ ଜାତ ହେଲା । ତା'ର ମୁଖମଣ୍ଡଳରେ ଉଜ୍ଜ୍ୱଳ ଜ୍ୟୋତି ଫୁଟି ଉଠୁଥାଏ । ସେ ଏକ ଦେବଶିଶୁ ପରି ଦିଶୁଥାଏ । ରାଜା ପୁତ୍ରର ମୁଖଦର୍ଶନରେ ଯେତିକି ଆନନ୍ଦଲାଭ କରୁଥାନ୍ତି, ଭବିଷ୍ୟତ ଚିନ୍ତାକରି ସେତିକି ଦୁଃଖିତ ହୋଇଉଠୁଥାନ୍ତି । ରାଣୀ ପୁତ୍ରର ମୁଖକୁ ଚାହିଁ ଆନନ୍ଦରେ ବିମୋହିତ ହୋଇଯାଉଥାନ୍ତି । ସ୍ୱର୍ଗର କେଉଁ ଦେବତା ଅଭିଶାପ ପାଇ କ'ଣ ମର୍ତ୍ତ୍ୟରେ ମୋର ପୁତ୍ର ରୂପେ ଜନ୍ମ ହୋଇଛି କି ବୋଲି ଭାବୁଥାନ୍ତି । ରାଣୀଙ୍କର ପୁତ୍ରଲାଭ ସମ୍ବାଦ ଶୁଣି ସମଗ୍ର ରାଜ୍ୟ ଉଲ୍ଲସିତ ହୋଇଯାଉଥାଏ । ଗୃହେ ଗୃହେ ଶୁଭ କଳସ ବସା ଯାଉଥାଏ । ଆମ୍ବପତ୍ରର ତୋରଣମାନ କରି ବିଭିନ୍ନ ସ୍ଥାନରେ ସଜା ଯାଇଥାଏ । ଶଙ୍ଖ, ହୁଳହୁଳି, ବାଦ୍ୟ ବାଜଣାରେ ରାଜ୍ୟ କମ୍ପି ଉଠୁଥାଏ । ସମସ୍ତଙ୍କ ନିମନ୍ତେ ଭୁରି ଭୋଜନର ବ୍ୟବସ୍ଥା କରାଯାଇଥାଏ ।

ରାଜପୁତ୍ର ଚନ୍ଦ୍ରକଳା ପରି ବଢ଼ି ଉଠୁଥାନ୍ତି । ରାଜା ପଣ୍ଡିତଙ୍କ କଥା କ୍ରମଶଃ ଭୁଲି ଯିବାରେ ଲାଗିଲେ । ରାଜପୁତ୍ରଙ୍କ ବୟସ ବଢ଼ିବା ସହିତ ସେ ବିଦ୍ୟା, ବୁଦ୍ଧି,





Digitized by srujanika@gmail.com



ବୀରତ୍ୱ, ଇତ୍ୟାଦିରେ ପାରଦର୍ଶିତା ଦେଖାଇ ଚାଲିଥାନ୍ତି । ତାଙ୍କୁ ସାତବର୍ଷ ହେବାପରେ ତାଙ୍କ ତଳେ ଆଉଗୋଟିଏ ଭାଇ(ରାଜପୁତ୍ର) ହେଲା । ଜ୍ୟେଷ୍ଠ ରାଜପୁତ୍ର ତାଙ୍କ ସାନଭାଇକୁ ବହୁତ ସ୍ନେହଶ୍ରଦ୍ଧା କରୁଥାନ୍ତି । ରାଜାରାଣୀ ଦୁଇରାଜପୁତ୍ରଙ୍କୁ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇଯାଉଥାନ୍ତି ।

ଦିନକର କଥା । ରାଜାଙ୍କ ନିକଟକୁ ଜଣେ ସନ୍ନ୍ୟାସୀ ଆସିଲେ । ଦ୍ୱାରପାଳ ତାଙ୍କୁ କିଛି ଭିକ୍ଷା ଦେଇ ସନ୍ତୁଷ୍ଟ କରିବାକୁ ଚାହୁଁଥିଲା । କିନ୍ତୁ ସନ୍ନ୍ୟାସୀ ଜିଦ୍ ଧରି ବସିଲେ ଯେ ସେ ଭିକ୍ଷା ନେବାକୁ ଆସି ନାହାନ୍ତି । ସେ ରାଜାଙ୍କ ସହିତ ସାକ୍ଷାତ କରିବାକୁ ଆସିଛନ୍ତି । ଦ୍ୱାରପାଳ ଯାଇ ରାଜାଙ୍କୁ ଏ କଥା ଜଣାଇଲା । ରାଜା ତାଙ୍କୁ ରାଜସଭା ଭିତରକୁ ନେଇ ଆସିବାକୁ କହିଲେ । ସନ୍ନ୍ୟାସୀ ରାଜାଙ୍କ ନିକଟରେ ପହଞ୍ଚିବା ପରେ ରାଜା ତାଙ୍କୁ ପ୍ରଣାମ କଲେ । ଆସନରେ ବସାଇଲେ । ଆସିବାର କାରଣ ପଚାରିଲେ । ସନ୍ନ୍ୟାସୀ କହିଲେ ଯେ ସେ ତାଙ୍କ ଜ୍ୟେଷ୍ଠପୁତ୍ରଙ୍କୁ ସଙ୍ଗରେ ନେବାପାଇଁ ଆସିଛନ୍ତି । ରାଜାଙ୍କ ମୁଣ୍ଡରେ ଚଡ଼ପ ପଡ଼ିଲା ପରି ଲାଗିଲା । ସଭାସଦ୍ ସନ୍ନ୍ୟାସୀଙ୍କ ସାହସ ଦେଖି ରାଗି ଗଲେ । କି କଥା ଏ ସାଧୁ କହୁଛନ୍ତି ? କିଛି ପାରିଷଦଙ୍କ ତରବାରୀ କୋଷମୁକ୍ତ ହୋଇଗଲା । ରାଜା ସେମାନଙ୍କୁ କ୍ରୋଧ ସମ୍ବରଣ କରିବାକୁ କହିଲେ । ସେ ଅତୀତରେ ଶୁଣିଥିବା ଭବିଷ୍ୟତବାଣୀ କଥା



Digitized by srujanika@gmail.com

ମନେପକାଉଲେ । ଏହି ସମୟରେ ଜ୍ୟେଷ୍ଠ ରାଜପୁତ୍ର ଓ କନିଷ୍ଠ ରାଜପୁତ୍ର ଦୌଡ଼ାଦୌଡ଼ି ଖେଳୁଖେଳୁ ସେଠାରେ ପହଞ୍ଚି ଗଲେ । ଜ୍ୟେଷ୍ଠ ରାଜପୁତ୍ର ସନ୍ନ୍ୟାସୀଙ୍କୁ ଦେଖିଲା ମାତ୍ରେ ସ୍ଥିର ହୋଇ ରହିଗଲେ । ସନ୍ନ୍ୟାସୀଙ୍କ ସହିତ ତାଙ୍କର ଚକ୍ଷୁ ମିଶିଗଲା । ଉଭୟେ ଉଭୟଙ୍କୁ ଚାହିଁ କିଛିକ୍ଷଣ ରହିଗଲେ । ତତ୍ପରେ ପରସ୍ପରଙ୍କୁ ଚାହିଁ ସ୍ମିତହାସ୍ୟ କଲେ । ରାଜା ଏସବୁ ଲକ୍ଷ୍ୟକରି ମ୍ରିୟମାଣ ହୋଇପଡୁ ଥାଆନ୍ତି । ରାଜପୁତ୍ର ଆନନ୍ଦରେ ଅଭିଭୂତ ହୋଇ ସନ୍ନ୍ୟାସୀଙ୍କୁ ପ୍ରଣାମ କଲେ । ତାଙ୍କ ସହିତ ଯିବାପାଇଁ ପିତାଙ୍କର ଅନୁମତି ଭିକ୍ଷା କଲେ । ରାଜସଭାରୁ ଅବିଳମ୍ବେ ଏହି ସମ୍ବାଦ ରାଣୀହଂସପୁରଙ୍କୁ ଚାଲିଗଲା । ରାଣୀ କରୁଣ ସ୍ୱରରେ ବିଳାପ କରିବାରେ ଲାଗିଲେ । ଅନ୍ତଃପୁରର ଅନ୍ୟ ନାରୀମାନେ କ୍ରନ୍ଦନରତ ହୋଇଉଠିଲେ । ଚତୁର୍ଦ୍ଦିଗରେ ଶୋକର ଛାୟା । ରାଜପୁତ୍ର ପିତାଙ୍କୁ ବହୁତ ବୁଝାଇଶୁଝାଇ ସନ୍ନ୍ୟାସୀଙ୍କ ସହିତ ବାହାରି ଗଲେ । ପିତାମାତା ଭାଇବନ୍ଧୁ କୁଟୁମ୍ବଙ୍କ ଠାରୁ ବିଚ୍ଛିନ୍ନ ହୋଇଯାଉଥିବାରୁ ସେ ସମସ୍ତଙ୍କୁ ହାତଯୋଡ଼ି କ୍ଷମାପ୍ରାର୍ଥନା କଲେ ଓ ସଂସାରର ମଙ୍ଗଳ ନିମନ୍ତେ ଏପରି କରୁଛନ୍ତି ବୋଲି ସାନ୍ତ୍ୱନା ଦେଇ କହିଲେ ।

କିଛି କାଳ ଅନ୍ତେ କନିଷ୍ଠ ରାଜପୁତ୍ର ରାଜା ହେଲେ । ଜ୍ୟେଷ୍ଠ ରାଜପୁତ୍ର ଜଣେ ଉଚ୍ଚକୋଟୀର ସାଧୁ ଭାବରେ ଖ୍ୟାତି ଅର୍ଜନ କଲେ । ଆଖପାଖ ନଗର, ରାଜ୍ୟମାନଙ୍କରେ ତାଙ୍କର ସୁନାମ ବ୍ୟାପି ଗଲା । ତାଙ୍କ ପ୍ରତି ଶ୍ରଦ୍ଧା, ସମ୍ମାନ ପ୍ରତ୍ୟେକଙ୍କର ରହିଥିଲା । ସେ ପୁତ୍ରଧର୍ମ ରକ୍ଷାକରି ମଝିରେ ମଝିରେ ରାଜପ୍ରସାଦ ଆସି ପିତାମାତାଙ୍କୁ ଦର୍ଶନକରି କିଛିଦିନ ତାଙ୍କର ସେବାଶୁଶ୍ରୂଷା କରି ଚାଲି ଯାଉଥିଲେ । ବୃଦ୍ଧ ଅବସ୍ଥାରେ ଥିବା ରାଜାରାଣୀ ପୁତ୍ରର ଉପଦେଶରେ ଅଖଣ୍ଡ ଶାନ୍ତିଲାଭ କରୁଥିଲେ । କନିଷ୍ଠପୁତ୍ର ସୁଚାରୁ ରୂପେ ରାଜ୍ୟ ଶାସନ କରୁଥିଲେ । ସନ୍ନ୍ୟାସୀ ପୁତ୍ରର ବାଣୀରେ ରାଜାରାଣୀ ସଂପୂର୍ଣ୍ଣ ଆକର୍ଷିତ ହୋଇ ମୋହମାୟା ଠାରୁ ନିଜକୁ ଦୂରେଇ ରଖିଥିଲେ ଏବଂ ଶେଷରେ ତାଙ୍କର ସ୍ୱର୍ଗଲାଭ ହୋଇଥିଲା ।





Digitized by srujanika@gmail.com

# ଇନ୍ଦ୍ରଙ୍କ ପରୀକ୍ଷା

ଏହା ଭଗବାନ ବୁଦ୍ଧଙ୍କର ଗୋଟିଏ ଜନ୍ମର ଘଟଣା । ବାରାଣସୀ ରାଜ୍ୟର ନିକଟବର୍ତ୍ତୀ ଏକ ଅଞ୍ଚଳରେ ଗୋଟିଏ ଘଞ୍ଚ ଅରଣ୍ୟ ଥାଏ । ସେହି ଅରଣ୍ୟରେ ଅସଂଖ୍ୟ ପଶୁପକ୍ଷୀ ନିର୍ଭୟରେ ବାସ କରନ୍ତି । ସମସ୍ତେ ନିଜ ନିଜର ଆହାର ପ୍ରଚୁର ପରିମାଣରେ ପାଆନ୍ତି । ତେଣୁ ସେହି ସ୍ଥାନକୁ ନିଜର ବାସସ୍ଥଳୀ ବୋଲି ଧରି ନେଇଥାଆନ୍ତି ।

ବାରାଣସୀର ସେହି ଅରଣ୍ୟରେ ବୁଦ୍ଧଦେବ ଏକ ଠେକୁଆ ରୂପରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ଶାନ୍ତ, ସୁନ୍ଦର ପରୋପକାରୀ । ତାଙ୍କର ତିନିଜଣ





Digitized by srujanika@gmail.com

ସାଙ୍ଗ ଅତ୍ୟନ୍ତ ଘନିଷ୍ଠ ହୋଇ ରହିଥିଲେ । ସେମାନେ ହେଲେ – ଗୋଟିଏ ବିଲୁଆ, ଗୋଟିଏ ମାଙ୍କଡ଼ ଏବଂ ଗୋଟିଏ ଓଧ । ଠେକୁଆ ରୂପୀ ବୁଦ୍ଧଙ୍କର ପାଖାପାଖି ରହୁଥିବାରୁ ଏହି ତିନୋଟି ସାଙ୍ଗଙ୍କର ବୁଦ୍ଧି, ବିଚାର ଉତ୍ତମ ଥିଲା । କ'ଣ କରିବା ଉଚିତ, କ'ଣ କରିବା ଉଚିତ ନୁହେଁ ଠେକୁଆଟି ତାହାର ସାଙ୍ଗ ତିନିଜଣଙ୍କୁ ସର୍ବଦା ଶିଖାଉ ଥିଲା । ସେମାନେ ମଧ୍ୟ ଠେକୁଆର କଥା ମାନି ସେହି ଅନୁସାରେ କାମ କରୁଥିଲେ । ସେମାନେ ନିଜନିଜ ଆହାରରୁ କିଛି ଅନ୍ୟକୁ ଦାନ କରୁଥିଲେ । ସପ୍ତାହରେ ଥରେ ଲେଖାଏଁ ଉପବାସ କରୁଥିଲେ । ଏହିପରି ଭାବରେ ଶାନ୍ତିଶୃଙ୍ଖଳାରେ ସେମାନେ ଜଙ୍ଗଲରେ ଚଳୁଥିଲେ ।

ଦିନକର କଥା । ସବୁଦିନ ପରି ଚାରିସାଙ୍ଗ ନିଜ ନିଜର ଖାଦ୍ୟ ଯୋଗାଡ଼ରେ ଯାଇଥାନ୍ତି ଓଧଟି କିଛି ମାଛ ସଂଗ୍ରହ କଲା, ବିଲୁଆ କିଛି ମାଂସ ଯୋଗଡ଼ କଲା ଏବଂ ମାଙ୍କଡ଼ଟି ଆମ୍ବଗଛରୁ କିଛି ଆମ୍ବ ସଂଗ୍ରହ କରି ଆଣିଲା । ଠେକୁଆ ନିଜର ଆହାର ନିମନ୍ତେ କିଛି ଘାସ ଯୋଗାଡ଼ କଲା । ସେ ମନେମନେ ଭାବିଲା ଯେ ଯଦି କେହି ଆସି ତାକୁ ଖାଇବା ପାଇଁ କିଛି ଖାଦ୍ୟଦ୍ରବ୍ୟ ମାଗେ ତେବେ ସେ କ'ଣ ଏହି ଘାସକୁ ହିଁ ଖାଇବା ପାଇଁ ଦେବ । ତା' ନିକଟରେ ତ ମାଛ, ମାଂସ କିମ୍ବା ଫଳମୂଳ ପରି ଭଲ ଦ୍ରବ୍ୟ ନାହିଁ । ଏହିପରି ଭାବିଭାବି ସ୍ଥିରକଲା ଯେ କେହି ତାକୁ ଖାଦ୍ୟ ମାଗିଲେ ସେ ନିଜର ଶରୀରକୁ ତାକୁ ଦାନ କରିଦେବ । ଏହିପରି ମନେମନେ ଭାବି ସେ ସ୍ଥିରକଲା ।

ଠେକୁଆର ଏପରି ଅତି ମହତ ଭାବନାକୁ ଦେବରାଜ ଇନ୍ଦ୍ର ଜାଣିପାରିଲେ । ସେ ଭାବିଲେ, 'ଠେକୁଆଟି ଖାଲି ଏହିପରି ଭାବୁଛି ନା ପ୍ରକୃତରେ ନିଜର ଶରୀର ଦାନ କରିବ ? ଦେଖିବା ସେହି ସ୍ଥାନକୁ ଯାଇ ତାକୁ ପରୀକ୍ଷା କରିବା । ତେବେ ଯାଇ ସେହି ଠେକୁଆର ଭାବନା ସତ୍ୟ କି ମିଥ୍ୟା ତାହା କାର୍ଯ୍ୟରେ ପ୍ରମାଣିତ ହେବ ।



Digitized by srujanika@gmail.com



ଦେବରାଜ ଇନ୍ଦ୍ର ଏକ ବ୍ରାହ୍ମଣର ବେଶ ଧରି ମର୍ତ୍ତ୍ୟକୁ ଓହ୍ଲାଇଲେ । ସେ ସେହି ଚାରି ସାଙ୍ଗ ଥିବା ସ୍ଥାନରେ ପହଞ୍ଚିଲେ । ପ୍ରଥମେ ସେ ଓଧ ପାଖକୁ ଯାଇ କିଛି ଖାଦ୍ୟ ମାଗିଲେ । ଓଧଟି ତା' ନିକଟରେ ଥିବା ମାଛ ତାଙ୍କୁ ଯାଚିଲା । ଇନ୍ଦ୍ର ତାହା ନେଲେ ନାହିଁ ଏବଂ ପରଦିନ ଆସିବେ ବୋଲି କହିଲେ । ବିଲୁଆ ଓ ମାଙ୍କଡ଼ ସେହିପରି ନିଜ ପାଖରେ ଥିବା ମାଂସ ଓ ଫଳ ଯାଚିବାକୁ ସେମାନଙ୍କୁ ମଧ ମନାକଲେ ଏବଂ ପରଦିନ ଆସିବାକୁ କହିଲେ । ଶେଷରେ ସେ ଠେକୁଆ ନିକଟକୁ ଗଲେ ଏବଂ ଖାଇବାକୁ ମାଗିଲେ । ଠେକୁଆ ଭାବିଲା "ଯାହା ହେଉ, ଆଜି ନିଜକୁ ଦାନ କରିବାକୁ ମୋପାଇଁ ଏକ ସୁବର୍ଣ୍ଣ ସୁଯୋଗ ଉପସ୍ଥିତ ହୋଇଛି । ଏହା ଭାବି ମହାଆନନ୍ଦରେ ତା'ର ମନ ପୂରି ଉଠିଲା । ସେ ଇନ୍ଦ୍ରଦେବଙ୍କୁ କିଛି କାଠ ସଂଗ୍ରହ କରି ସେଥିରେ ଅଗ୍ନି ସଂଯୋଗ କରିବାକୁ କହିଲା । ଇନ୍ଦ୍ରଦେବ ସେହିପରି କଲେ । ଠେକୁଆଟି ସେହି ପ୍ରଜ୍ୱଳିତ ଅଗ୍ନି ଭିତରକୁ ଡେଇଁ ପଡ଼ିଲା । ମାତ୍ର ନିଆଁର ତେଜ ଠେକୁଆର କୌଣସି କ୍ଷତି କଲାନାହିଁ କିମ୍ବା ତାକୁ ଉତପ୍ତ ଲାଗିଲା ନାହିଁ ।



Digitized by srujanika@gmail.com

ଅଗ୍ନିର ଶିଖା ତାକୁ ଶୀତଳ ପବନ ପରି ମନେହେଲା । ଏପରି ଲାଗିବାର ଅର୍ଥ କ'ଣ ହୋଇପାରେ ଠେକୁଆଟି ତାହା ବୁଝି ପାରିଲା ନାହିଁ । ତେଣୁ ବ୍ରାହ୍ମଣ ରୂପ ଧରିଥିବା ଇନ୍ଦ୍ରଙ୍କୁ ଏହାର କାରଣ ପଚାରିଲା । ଇନ୍ଦ୍ର ଏଥର ନିଜର ଅସଲ ପରିଚୟ ଦେଲେ । ସେ ଠେକୁଆର ନିଷ୍ଠାକୁ ପରୀକ୍ଷା କରିବାକୁ ସ୍ୱର୍ଗରୁ ପୃଥିବୀକୁ ଆସିଥିଲେ ବୋଲି କହିଲେ । ସେହି କଥା ଶୁଣି ଠେକୁଆ କହିଲା - "ହେ ଇନ୍ଦ୍ର, ଆପଣଙ୍କର ସବୁ ଚେଷ୍ଟା ବୃଥା ହେଲା । ଯେ କେହି ମୋର ପରୀକ୍ଷା ନେଲେ ବି ମୁଁ ସେଥିପାଇଁ ଅନିଚ୍ଛା ପ୍ରକାଶ କରିବି ନାହିଁ । ଇନ୍ଦ୍ର କହିଲେ - "ହେ ଶଶକ, ତୁମେ ପୁଣ୍ୟାତ୍ମା ଅଟ । ଏହି ପୃଥିବୀ ରହିଥିବା ପର୍ଯ୍ୟନ୍ତ ତୁମର ଗୁଣକୀର୍ତ୍ତନ ହେଉଥିବ ।" ଏହିପରି କହି ଇନ୍ଦ୍ର ଗୋଟିଏ ପର୍ବତକୁ ଉଠାଇ ନିଜ ହାତରେ ଚିପି ଧରିଲେ ଏବଂ ନିଜ ବାହୁରେ ଠେକୁଆଟିକୁ ଧରି ଜହ୍ନ ଉପରେ ଗାର କାଟି ତାହାର ଏକ ଅବିକଳ ଚିତ୍ର ଅଙ୍କନ କରିଦେଲ । ପର୍ବତରୁ କିଛି ତରଳ ପଦାର୍ଥ ବାହାରିଲା ଯାହାକି ଇନ୍ଦ୍ରଙ୍କ ପାଇଁ ସ୍ୟାହିର କାର୍ଯ୍ୟକଲା ଚିତ୍ର ଆଙ୍କିବାରେ । ତା'ପରେ ଠେକୁଆଟିକୁ ଜଙ୍ଗଲର କଅଁଳ ଘାସ ଉପରେ ଛାଡ଼ି ଦେଲେ ଏବଂ ନିଜର ସ୍ୱର୍ଗପୁରକୁ ଫେରିଗଲେ । ସେଥିପାଇଁ ଆଜି ମଧ୍ୟ ଜହ୍ନରେ ଏକ ଠେକୁଆର ଚିତ୍ର ଅଙ୍କିତ ହୋଇଥିବାର ଦେଖିବାକୁ ମିଳେ ।

(ବୁଦ୍ଧଙ୍କର ଗୋଟିଏ ଜନ୍ମର କାହାଣୀ ଅବଲମ୍ବନରେ)





Digitized by srujanika@gmail.com

# ପକ୍ଷୀ ସହ ବନ୍ଧୁତା

ଥରେ ଜଣେ ସୌଦାଗର ତାଙ୍କର ଗୃହକୁ ଫେରୁ ଥାଆନ୍ତି । ବ୍ୟବସାୟରେ ଭଲ ଲାଭ ହୋଇଥିବାରୁ ତାଙ୍କର ମନ ଖୁସି ହୋଇଯାଇଥାଏ । ସେ ରାଜରାସ୍ତା ପଟରେ ନ ଆସି ଆଉ ଗୋଟିଏ ରାସ୍ତାରେ ଆସୁଥାଆନ୍ତି । ସେ ବାଟଟି ଏକ ସରୁ ଜଙ୍ଗଲିଆ ରାସ୍ତା । ଅବଶ୍ୟ ଛୋଟ ଜଙ୍ଗଲଟିଏ । ସେଥିରେ ବାଘ ସିଂହ ଜାତୀୟ ହିଂସ୍ରପଶୁ ନଥାନ୍ତି । ରାତିବେଳା ହୋଇଥିଲେ ଚୋର ଖଣ୍ଡ ଭୟ ରହିଥାନ୍ତା । କିନ୍ତୁ, ଦିନବେଳା ଏସବୁ ଭୟ ନଥାଏ ଭାବି ସୌଦାଗର ଯାତ୍ରା କରୁଥାନ୍ତି । ତାଙ୍କ ସହ ତାଙ୍କର ଲୋକ ଘରିଜଣ ରହିଥାନ୍ତି । ବାଟରେ ଏକ ସରୋବର ପଡ଼ିଲା ।





Digitized by srujanika@gmail.com



ସେଥିରେ ପଦ୍ମଫୁଲ ସବୁ ଫୁଟିଥାଏ । ଭାରି ସୁନ୍ଦର ଦିଶୁଥାଏ । ହଂସମାନେ ପହଁରୁଥା'ନ୍ତି । ବୃକ୍ଷମାନଙ୍କରେ ପକ୍ଷୀଗୁଡ଼ିକ ବସି କଳରବ କରୁଥାନ୍ତି । ସୌଦାଗର ତାଙ୍କର ପରିଚାରକମାନଙ୍କୁ ଏକ ବୃକ୍ଷ ମୂଳରେ ବସିବାର ବ୍ୟବସ୍ଥା କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏପରି ମନୋରମ ପରିବେଶ ତାଙ୍କୁ ତ ଭାରି ଭଲ ଲାଗୁଥାଏ । ଏଠାରେ କିଛିସମୟ ବିଶ୍ରାମ କଲେ ଥକ୍କା ମେଣ୍ଟିଯିବ । ପୁଣି ଭୋକ ହେଲାଣି । ସଙ୍ଗରେ ଆଣିଥିବା ଖାଦ୍ୟରୁ କିଛିକିଛି ଖାଇ ସେମାନେ ପୁଣି ଯାତ୍ରା କରିବେ ।

ସୌଦାଗରଙ୍କର ପରିଚାରକମାନେ ଏକ ବଡ଼ ବୃକ୍ଷମୂଳରେ ସମସ୍ତେ ବସିବାର ବନ୍ଦୋବସ୍ତ କରିଦେଲେ । ସୌଦାଗରଙ୍କୁ ତ ଭୋକ ଲାଗୁଥିଲା । ତାଙ୍କ ପରିଚାରକମାନଙ୍କୁ ମଧ୍ୟ ଭୋକ ଲାଗୁଥିଲା । ସମସ୍ତେ ଖାଇପିଇ ସାରି କିଛିସମୟ ବିଶ୍ରାମ କଲେ । ଏହି ସମୟରେ ଗୋଟିଏ ପକ୍ଷୀ ଆସି ସୌଦାଗରଙ୍କର କାନ୍ଧ ଉପରେ ବସିଲା । ସୁନ୍ଦର ସ୍ୱରରେ ଗୀତ ଗାଇଲା । ତା' ସ୍ୱର ଶୁଣି ସୌଦାଗର ମୁଗ୍ଧ ହୋଇଗଲେ । ତାକୁ ସଙ୍ଗରେ ଗୃହକୁ ନେବାପାଇଁ ଇଚ୍ଛା କଲେ । ତାଙ୍କର ପରିଚାରକମାନଙ୍କୁ ଆଦେଶ ଦେଲେ ପକ୍ଷୀଟିକୁ ଧରି ରଖିବାକୁ । ପରିଚାରକମାନେ ତାକୁ ଧରିବାକୁ ଚେଷ୍ଟାକଲା ବେଳକୁ ସେ ଉଡ଼ି ଯାଉଥାଏ । ଚୁପ୍ ହୋଇ ଯାଉଥାଏ ।



Digitized by srujanika@gmail.com



କେବଳ ସୌଦାଗରଙ୍କ ପାଖରେ ହିଁ ରହୁଥାଏ । ତେଣୁ ସୌଦାଗର ପରିଚାରକମାନଙ୍କ ଦାୟିତ୍ୱରେ ପକ୍ଷୀକୁ ନ ରଖି ନିଜେ ହିଁ ଧରିଲେ । ସମସ୍ତେ ଗୃହ ଅଭିମୁଖେ ଯାତ୍ରା କଲେ । ମଝିରେ ମଝିରେ ସୌଦାଗର ପକ୍ଷୀଟିକୁ କୋମଳ ଭାବରେ ଆଉଁଷି ଦେଉଥାନ୍ତି । ସେ ମଧୁର ସ୍ୱରରେ ରାବ ଦେଇ ତାଙ୍କ ସ୍ନେହର ପ୍ରତ୍ୟୁତ୍ତର ଦେଉଥାଏ । ସନ୍ଧ୍ୟା ସମୟକୁ ସମସ୍ତେ ସୌଦାଗରଙ୍କ ଗୃହରେ ପହଞ୍ଚି ଗଲେ ।

ସୌଦାଗରଙ୍କର ପତ୍ନୀ ଏହି ସୁନ୍ଦର ପକ୍ଷୀଟିକୁ ଦେଖି ଅତି ପ୍ରସନ୍ନ ହେଲେ । ସେମାନଙ୍କର ସନ୍ତାନସନ୍ତତି ନ ଥିଲେ । ତେଣୁ ସୌଦାଗର ଓ ତାଙ୍କ ପତ୍ନୀ ମନେମନେ ଦୁଃଖିତ ଥିଲେ । ଅନେକ ଦାନ, ଧର୍ମ, ବ୍ରତ, ଉପବାସ କଲାପରେ ମଧ୍ୟ ତାଙ୍କର ସନ୍ତାନ ହେଉ ନଥିଲା । ବର୍ତ୍ତମାନ ପକ୍ଷୀଟିକୁ ଦେଖି ସୌଦାଗର ପତ୍ନୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ପକ୍ଷୀଟି ନିର୍ଭୟରେ ତାଙ୍କ ଉପରେ ଯାଇ ବସିଲା । ସେ ହାତରେ ଧରିବାରୁ ଉଡ଼ି ଯିବାକୁ ଚେଷ୍ଟା କଲାନାହିଁ । ସୁନ୍ଦର ସ୍ୱରରେ ଗୀତ ଗାଇ ତାଙ୍କୁ ଶୁଣାଇଲା । ସେ ସ୍ନେହରେ ପକ୍ଷୀଟିକୁ ଗେହ୍ଲା କଲେ । ପାଚିଲା ପିଜୁଳିକୁ ଛୋଟଛୋଟ ଖଣ୍ଡ କରି ତାକୁ ଖୁଆଇଲେ । ପକ୍ଷୀଟି ତା'ର ଥଣ୍ଟରେ ପାଚିଲା ପିଜୁଳିକୁ ଖୁମ୍ପି ଖାଇଲା । ସୌଦାଗର ଓ ତାଙ୍କ ପତ୍ନୀ ପକ୍ଷୀକୁ ସ୍ନେହକରି ସନ୍ତାନ ନ ଥିବା ଦୁଃଖକୁ ଭୁଲିଗଲେ ।



Digitized by srujanika@gmail.com

ସୌଦାଗର ପକ୍ଷୀଟି ରହିବା ନିମନ୍ତେ ଗୋଟିଏ ସୁନ୍ଦର ପଞ୍ଜୁରି ଆଣିଲେ । ତାଙ୍କର ପତ୍ନୀ ପଞ୍ଜୁରିର ଦ୍ୱାରଟିକୁ ବନ୍ଦ କରୁ ନଥିଲେ । ଖୋଲା କରି ରଖିଥିଲେ । ସେମାନେ ପକ୍ଷୀକୁ ସ୍ୱାଧୀନ ଭାବରେ ଯିବାଆସିବା କରିବା ପାଇଁ ସବୁ ସୁବିଧା କରି ଦେଇଥିଲେ । ପକ୍ଷୀଟି କିନ୍ତୁ ସେମାନଙ୍କୁ ଛାଡ଼ି ଯାଉ ନଥିଲା । ମନ ହେଲେ ପଞ୍ଜୁରିରୁ ବାହାରି ଯାଇ କେତେବେଳେ ପାଖ ଗଛରେ ବସୁଥିଲା ତ କେତେବେଳେ ସୌଦାଗରଙ୍କ କାନ୍ଧରେ ବସୁଥିଲା । କେବେ ପୁଣି ତାଙ୍କ ପତ୍ନୀଙ୍କ କୋଳରେ ବସୁଥିଲା । ଗଲା ଆସିଲା ଲୋକେ ତା'ର ଆଚରଣ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ଥରେ ସୌଦାଗର ତାଙ୍କ ପଲଙ୍କରେ ବିଶ୍ରାମ ନେଉଥାନ୍ତି । ଗୋଟିଏ ସାପ ତାଙ୍କ ଦ୍ୱାର ପାଖରେ ଉପସ୍ଥିତ ହେଲା । ଏହି ସମୟରେ ପକ୍ଷୀଟି ତାଙ୍କ ପତ୍ନୀଙ୍କ ପାଖରେ ଅତି ବିକଳ ହୋଇ ରାବିବାରେ ଲାଗିଲା । ତା'ର ସ୍ୱର ମଧୁର ଶୁଭୁ ନଥିଲା । କରୁଣ ଶୁଭୁଥିଲା ସେ ଲଗାତାର ରାବୁ ଥାଏ । ତାଙ୍କ ପତ୍ନୀ ତା'ର ରାବ ଶୁଣି ବ୍ୟସ୍ତ ହୋଇ ସ୍ୱାମୀଙ୍କ ନିକଟକୁ ଆସିଲା ବେଳକୁ ସାପଟିକୁ ଦେଖିଲେ । ସେ ବଡ଼ପାଟିରେ ପରିଚାରକମାନଙ୍କୁ ଡାକିଲେ । ସେମାନେ ବାଡ଼ିଧରି ଦଉଡ଼ି ଆସିଲେ ଓ ସାପଟିକୁ ସେଠାରୁ ବାହାର କଲେ । ସାପଟି ବାହାରକୁ ଚାଲିଗଲା । ସୌଦାଗର ପଲଙ୍କରୁ ଉଠି ସବୁକଥା ଜାଣିଲେ । ସେ ଓ ତାଙ୍କ ପତ୍ନୀ ଉଭୟେ ପକ୍ଷୀଟିକୁ ଖୁବ୍ ସ୍ନେହ, ଆଦର କଲେ । ଛୋଟିଆ ଜୀବଟିଏ ହେଲେ ମଧ୍ୟ ସେ ଯେପରି ସମୟ ଅନୁସାରେ ବିଶ୍ୱସ୍ତ ବନ୍ଧୁ ପରି କାମକଲା ସେଥିରେ ଆଶ୍ଚର୍ଯ୍ୟ ହେଲେ । ଏତିକିବେଳେ ପକ୍ଷୀଟି ଘର ବାହାର ଉଡ଼ି ଉଡ଼ି ସୁନ୍ଦର ସ୍ୱରରେ ଗୀତ ବୋଲିଲା । ସୌଦାଗର ଓ ତାଙ୍କ ପତ୍ନୀ ମୁଗ୍ଧ ହୋଇ ତାକୁ ଚାହିଁ ରହିଲେ । ଅମୃତଭଣ୍ଡା ପାଚି ଥିଲା । ସୌଦାଗର ଓ ତାଙ୍କ ପତ୍ନୀ ଉଭୟେ ପକ୍ଷୀଟିକୁ ଆଦରରେ ତାକୁ ଖୁଆଇଲେ । ସେ ଆନନ୍ଦରେ ତାକୁ ଖାଇଲା । ପୁଣି ଉଡ଼ି ଉଡ଼ି ଗୀତ ବୋଲିଲା ।





Digitized by srujanika@gmail.com

# ଆମ କିଟି

ଆମ ଘରକୁ ପ୍ରାୟ ସବୁଦିନ ଗୋଟିଏ ବିଲେଇ ଆସୁଥିଲା । ତାକୁ ମୋ ମାଆ କ୍ଷୀର ଦେଉଥିଲେ । ସେ ସବୁତକ କ୍ଷୀର ପିଇ ଦେଉଥିଲା । ମୁଁ ଯେତେବେଳେ ତାକୁ ଆଉଁଷି ଦିଏ ସେ ଖୁସିରେ ଗଡ଼ିଯାଏ । ମୋ ଆଡ଼କୁ ଚାହିଁ ରହେ । ତା'ର ଖୁବ୍ ଧଳା କୋମଳ ଲୋମ ଦେଖିଲେ ମୁଁ ବହୁତ ଆନନ୍ଦିତ ହୋଇଯାଏ । ସିଏ ମୋ ଗୋଡ଼ରେ ଘଷି ହୋଇ ଗେହ୍ଲା ହୁଏ । ବିସ୍କୁଟ୍ ଛୋଟଛୋଟ ଖଣ୍ଡ କରିଦେଲେ ସେ ତାକୁ କୁଡ୍ରୁକୁଡ୍ରୁ କରି ଚୋବାଇ ଖାଇବାର ଦୃଶ୍ୟ ଅତି ଚମତ୍କାର । ଆମଘରୁ





Digitized by srujanika@gmail.com

ମୂଷାଙ୍କ ବଂଶ ନିପାତ କରିଦେଇଥିଲା ସେ ବିଲେଇ । ଛକିଛକି ରହି ଖାପକରି ମାଡ଼ି ବସେ ମୂଷାଙ୍କୁ । ଆମଘର ତ ଆମ ଘର ଆମ ଆଖପାଖ ଘରମାନଙ୍କରୁ ମଧ୍ୟ ମୂଷା ମାରି ଦେଉଥିଲା । ପରେ ଏପରି ହେଲା ସେହି ବିଲେଇଟି କୁଆଡ଼େ ବାହାରକୁ ଚାଲିଗଲେ ମଧ୍ୟ ବାରମ୍ବାର ଆମରି ଘରକୁ ଫେରି ଆସୁଥିଲା । ରାତିରେ ଆମଘରେ ରହୁଥିଲା । ମୁଁ କେତେଥର ଦେଖିଚି ସେ ଆମ ସୋଫା ଉପରେ ଶୋଇପଡ଼େ । ତାକୁ 'କିଟି' ଡାକିଲା ମାତ୍ରେ ପାଖକୁ ଚାଲି ଆସେ । ତା' ଖାଇବା ପାଇଁ ଦୁଇଟି ସ୍ୱତନ୍ତ୍ର ଗିନା ରଖାଗଲା । ଗୋଟିକରେ କ୍ଷୀର ସହିତ ଭାତ ଗୋଳେଇ ଦିଆଯାଏ । ଆଉ ଗୋଟିକରେ ପାଣି ଦିଆଯାଏ । ଆମ ଘରେ ଆମିଷ ହୁଏନାହିଁ । ତେଣୁ କିଟି ମାଛ ଆଉ ଖାଇପାରେ ନାହିଁ । ବାହାରେ କିଏ କେଉଁଦିନ ତାକୁ ମାଛ ଦେଲେ ସେ ଖାଇଦିଏ । ଆମ ଘରର ଖାଦ୍ୟଦ୍ରବ୍ୟରେ କେବେହେଲେ ସେ ମୁହଁ ମାରେନାହିଁ । ସେଥିପାଇଁ ମାଆ ତାକୁ ଭାରି ଆଦର କରନ୍ତି । ସକାଳ ହୋଇଗଲେ ସେ ଖାଲି ମାଆଙ୍କ ଗୋଡ଼ରେ ଘଷି ହୋଇ ମ୍ୟାଉଁ ମ୍ୟାଉଁ ହୁଏ । ତାକୁ କ୍ଷୀର ମିଇବାକୁ ଦେଇସାରିଲେ ଚୁପ୍ ହୋଇ ରହେ ।

ଥରେ କିଟି ଚାରୋଟି ଛୁଆ ଜନ୍ମକଲା । ସେଗୁଡ଼ିକ ଖୁବ୍ କୌତୁକିଆ ହୋଇ ଦେଖାଯାଉ ଥାଆନ୍ତି । ସେଥିରୁ ଦୁଇଟି ଛୁଆ କିଟି ପରି ପୂରା ଧଳା । ଆଉ ଦୁଇଟି ଧଳା ପାଉଁଶିଆ । ପାଉଁଶିଆ ରଙ୍ଗ ଅଧିକ ଧଳାରଙ୍ଗ କମ୍ । ମୋର ସେ ଛୁଆଗୁଡ଼ିକୁ ଦେଖି ଆନନ୍ଦର ସୀମା ରହିଲା ନାହିଁ । ସେମାନେ ଟିକେ ବଡ଼ ହୋଇଗଲା ପରେ କ୍ଷୀରଭାତ ଖାଇଲେ । ମୋ ବାପା ତାଙ୍କଲାଗି ଗୋଟିଏ ଲମ୍ବା ଟ୍ରେର ବ୍ୟବସ୍ଥା କରିଦେଲେ । କ୍ଷୀରଭାତ ଗୋଳେଇ ସେହି ଟ୍ରେରେ ଦିଆଯାଏ । ମାଆ ପିଲା ପାଞ୍ଚଜଣ ଧାଡ଼ି ହୋଇ ବସି ଖାଆନ୍ତି । ଆମ ବାଡ଼ିପଟ ଅଗଣାର ସିମେଣ୍ଟ ଅଂଶରେ ତାଙ୍କୁ ଖାଇବାକୁ ଦିଆଯାଏ । ଛୁଆଙ୍କ ପାଇଁ ବଡ଼ ଟୋକେଇ ରଖା ହୋଇଥାଏ । ସେମାନେ ସେଇ ଟୋକେଇ ଭିତରେ ପଶି ଖେଳାଖେଳି କରନ୍ତି । ପୁଣି ସେଠାରୁ ବାହାରକୁ ଆସି ଦୌଡ଼ାଦୌଡ଼ି କରନ୍ତି । କିଟି ବାହାରକୁ ଯାଇ କେବେକେବେ ମୂଷା ମାରି ଆଣି ତାଙ୍କୁ ଖାଇବା ଶିଖାଏ ।



Digitized by srujanika@gmail.com



ଆମ ପାଖଘରେ କିଟି ଯାଇ କେବେକେବେ ମାଛକଣ୍ଟା ଖାଏ । ସେମାନେ ତାକୁ ଦେଉଥିବାରୁ ସେ ବାରମ୍ବାର ଯାଏ । ଆମ ଘରେ ତାକୁ ବା ତା'ର ପିଲାମାନଙ୍କୁ ବାହାରକୁ ଯିବାରେ ବାରଣ ନଥାଏ । ତେଣୁ ସେମାନେ ସ୍ୱାଧୀନ ଭାବରେ ବୁଲାବୁଲି କରୁଥାନ୍ତି । ଥରେ ତାଙ୍କ ଘରର ଜଣେ ଲୋକ କିଟିର ପିଲାମାନଙ୍କୁ ଗୋଟିଏ ପେଟିରେ ରଖି ଦୂରରେ ଛାଡ଼ିଦେଇ ଆସିଲେ । ଛାଡ଼ି ସାରିଲା ପରେ ମାଆଙ୍କୁ କହିଲେ ଯେ ସେମାନେ ତାଙ୍କୁ ସକାଳୁ ଶୁଆଇ ଦେଲେ ନାହିଁ । ମ୍ୟାଉଁ ମ୍ୟାଉଁ ହେଲେ । କିଟି ମୁହଁ ଶୁଖାଇ ତାଙ୍କୁ ଖୋଜୁଥାଏ । ସେ ସେଦିନ ଦୁଃଖରେ ଖାଇଲା ନାହିଁ । ଏହା ଶୁଣି ମାଆଙ୍କର ମନ ବହୁତ ଦୁଃଖ ହେଲା । ସେ ଲୋକଙ୍କୁ କିଛି କହିଲେ ନାହିଁ । ମୁଁ ବିଦ୍ୟାଳୟରୁ ଫେରିଲା ବେଳକୁ ବାଟରେ ଗୋଟିଏ ବାଡ଼ର ଏ ପାଖରେ ଦୁଇଟି କୁକୁର ଠିଆ ହୋଇ 'ଭୋ' 'ଭୋ' ହେଉଛନ୍ତି । ବିଲେଇଛୁଆଙ୍କର ମ୍ୟାଉଁ ମ୍ୟାଉଁ ବାଡ଼ର ଭିତର ପାଖରୁ ଶୁଭୁଥାଏ । ମୁଁ ଘରକୁ ଆସି ବହିପତ୍ର ରଖିଦେଇ ଆମ କିଟିଛୁଆମାନେ କାହାନ୍ତି ? ମାଆଙ୍କୁ ପଚାରିବାରୁ



Digitized by srujanika@gmail.com

ସେ କହିଲେ ଯେ ତାଙ୍କଘର ନେଇ ବାହାରେ ଛାଡ଼ି ଦେଇଛନ୍ତି । ମୁଁ ଦୁଃଖରେ ଓ କ୍ରୋଧରେ ଅସ୍ଥିର ହୋଇଗଲି । ମାଆ ମୋତେ ବୁଝାଇ ଶାନ୍ତ କରୁକରୁ ମୁଁ ହଠାତ୍ ଭାବିଲି ଯେ ସେହି ମ୍ୟାଉଁ ମ୍ୟାଉଁ କରୁଥିବା ଛୁଆଗୁଡ଼ିକ କିଟିର । ଶୀଘ୍ର ଶୀଘ୍ର ଯାଇ ଆମ ଘର ନିକଟରେ ଥିବା ସେହି ବାଡ଼ ପାଖରେ ପହଞ୍ଚିଲି । ଗୋଟିଏ ବାଡ଼ି ଭାଙ୍ଗି ସେ କୁକୁର ଦୁଇଟିକୁ ମାରିବାକୁ ଉଞ୍ଚେଇବାରୁ ସେମାନେ ସେଠାରୁ ଦଉଡ଼ି ପଳେଇଲେ । ତା'ପରେ ମୁଁ ସେହି ପାଖ ଲୋକଙ୍କ ଅନୁମତି ନେଇ ତାଙ୍କ ବାଡ଼ି ଭିତରେ ପଶିଲି । ମୋତେ ଦେଖି କିଟିର ଛୁଆ ଚାରୋଟି ଦଉଡ଼ି ଦଉଡ଼ି ମୋ ପାଖକୁ ଆସିଲେ । ମୋତେ ଖୋଜି ଖୋଜି ମାଆ ସେଠାରେ ପହଞ୍ଚି ଥିଲେ । ବାଡ଼ ବାଟ ଦେଇ ଦୁଇଟି ଛୁଆଙ୍କୁ ମୁଁ ମାଆଙ୍କ ହାତକୁ ବଢ଼ାଇ ଦେଲି । ଆଉ ଦୁଇଟିଙ୍କୁ ହାତରେ ଧରି ଆମେ ତାଙ୍କୁ ଘରକୁ ଆଣିଲୁ । ମାଆ କହିଲେ, "ହେ ପ୍ରଭୁ, ଛୁଆ ଚାରୋଟିଙ୍କୁ ବଞ୍ଚାଇ ଦେଇଛ । କୁକୁର ତାଙ୍କୁ କାମୁଡ଼ି ନାହାନ୍ତି । ସେମାନେ ତାଙ୍କ ମାଆ ପାଖକୁ ଫେରି ଆସିଛନ୍ତି ।" ମନ ଦୁଃଖରେ ଚୁପ୍ ହୋଇ ବସିଥିବା କିଟି ଯେମିତି ତା'ର ପିଲାମାନଙ୍କୁ ଦେଖିଲା ପରମ ସ୍ନେହରେ ଚାଟି ପକାଇଲା । ସେମାନେ ସମସ୍ତେ ମାଆ କୋଳରେ ଜାକିଜୁକି ହୋଇଗଲେ । ମାଆ ତାଙ୍କୁ ଖାଇବାକୁ ଦେଲେ । କ୍ଷୀରରେ ଭାତ ଗୋଳେଇ ତାଙ୍କ ଟ୍ରେରେ ଦେବାରୁ ପାଞ୍ଚଜଣ ଯାକ ଧାଡ଼ିବାନ୍ଧି ବସି ପରମ ଆନନ୍ଦରେ ଖାଇବାରେ ଲାଗିଲେ । ସେ ଦିନସାରା କିଟି ଖାଇ ନଥିଲା । ତା' ପିଲାମାନେ ମଧ୍ୟ ଖାଇ ନଥିଲେ । ଚାଟିଚୁଟି ସବୁ ଖାଦ୍ୟ ସଫା କରିଦେଲେ ଆଉ ଟିକେ ହେଲେ ଟ୍ରେରେ ଲାଗି ରହିଲା ନାହିଁ । ଛୁଆମାନଙ୍କୁ ପାଇଥିବାରୁ ମୋତେ ଅତ୍ୟନ୍ତ ଶାନ୍ତି ଲାଗୁଥିଲା । ମନ ଖୁସି ହେଉଥିଲା । ଆମ ଘରପାଖ ଲୋକ ଉପରେ ଆସୁଥିବା ରାଗ ମୁଣ୍ଡରୁ ଓହ୍ଲେଇ ଗଲା । ପୁଣି କିଟିର ପିଲାମାନେ ଦଉଡ଼ାଦଉଡ଼ି କରି ଖେଳିବାରେ ଲାଗି ଯାଇଥିଲେ । ପଶୁଙ୍କ ସ୍ନେହ ମଧ୍ୟ ମଣିଷ ପରି ।





Digitized by srujanika@gmail.com

# ଗୁରୁଙ୍କ ଆଶୀର୍ବାଦ

ଜଣେ ସାଧୁ ଜଙ୍ଗଲ ମଧ୍ୟରେ ବାସ କରୁଥାନ୍ତି । ତାଙ୍କର ପାଞ୍ଚଜଣ ଶିଷ୍ୟ ତାଙ୍କ ସହିତ ରହନ୍ତି । ସେମାନେ ଗୁରୁଙ୍କ ଠାରୁ ବିଦ୍ୟାଲାଭ କରନ୍ତି । ଆଶ୍ରମ କାର୍ଯ୍ୟରେ ସହଯୋଗ କରନ୍ତି । ଗୋସେବା, କାଷ୍ଠ ସଂଗ୍ରହ, ଯଜ୍ଞ ନିମନ୍ତେ ଆୟୋଜନ ଇତ୍ୟାଦି କାର୍ଯ୍ୟ ସମୟାନୁସାରେ କରିବାକୁ ହୁଏ । ଏକଦା ଗୁରୁଙ୍କର ହାତରେ ଗୋଟିଏ କ୍ଷତ ହୋଇଗଲା । ସେଥିରେ ଔଷଧ ଲେପ ଦିଆଗଲା । କିନ୍ତୁ ତାହା ଭଲହେଲା ନାହିଁ । ଅଧିକ ଗଭୀର ହୋଇଗଲା । ସେଥିରୁ ପୂଜରକ୍ତ ବାହାରି ଦୁର୍ଗନ୍ଧ ହେଲା । ଯେଉଁ ଶିଷ୍ୟମାନେ ଥିଲେ ପ୍ରଥମେ ପ୍ରଥମେ ତାଙ୍କର ସେବା





Digitized by srujanika@gmail.com

କରିବାରେ ତତ୍ପରତା ପ୍ରକାଶ କରୁଥିଲେ । ପରେ ବିଭିନ୍ନ ଆଳ ଦେଖାଇ ଜଣଜଣ କରି ଆଶ୍ରମରୁ ବିଦାୟ ନେଇ ଚାଲିଗଲେ । ଶେଷକୁ ଜଣେ ଶିଷ୍ୟ ରହିଲା । ଗୁରୁ ତାକୁ ଚାଲି ଯିବାକୁ କହିଲେ ମଧ୍ୟ ସେ ତାଙ୍କୁ ଛାଡ଼ି ଗଲା ନାହିଁ । ଶାନ୍ତ ମନରେ ଧୈର୍ଯ୍ୟଧରି ତାଙ୍କର ସେବାଶୁଶ୍ରୁଷା କଲା । ଅଳ୍ପଦିନ ଭିତରେ ଗୁରୁଙ୍କର କ୍ଷତ ଭଲ ହୋଇଗଲା । ବାସ୍ତବରେ ଗୁରୁ ଶିଷ୍ୟମାନଙ୍କର ଏକ ପରୀକ୍ଷା ନେବା ପାଇଁ ଏପରି କରିଥିଲେ । ଶିଷ୍ୟମାନଙ୍କର ମନୋଭାବ ଜାଣିବାକୁ ହେଲେ ଗୁରୁଙ୍କୁ ବିଭିନ୍ନ ଉପାୟ ଅବଲମ୍ବନ କରିବାକୁ ହୋଇଥାଏ । ଯେଉଁ ଶିଷ୍ୟଟି ଶେଷ ପର୍ଯ୍ୟନ୍ତ ତାଙ୍କ ନିକଟରେ ରହିଲା ଓ ଭକ୍ତିର ସହ ତାଙ୍କର ସେବାକଲା ଗୁରୁ ଜାଣିଲେ ଯେ ସେହି ତାଙ୍କର ଶିକ୍ଷାକୁ ଉପଯୁକ୍ତ ଭାବରେ ଗ୍ରହଣ କରିପାରିଛି । ସେହି ଶିଷ୍ୟ ପ୍ରତି ତାଙ୍କର ଅନ୍ତର ଶ୍ରଦ୍ଧାରେ ଭରିଗଲା । ସେ ଦିନେ ଶିଷ୍ୟକୁ ଡାକି କହିଲେ, "ବତ୍ସ, ମୋ ଦ୍ୱାରା ତୁମକୁ ଯାହା ଶିକ୍ଷା ମିଳିବା କଥା ତୁମେ ତାହା ପାଇ ସାରିଛ । ଏବେ ତୁମେ ସମାଜରେ ସେଗୁଡ଼ିକର ପ୍ରୟୋଗ କରିବାକୁ ଚେଷ୍ଟାକର । ଶିକ୍ଷାର ବାସ୍ତବ ପ୍ରୟୋଗ ହେଲେ ତାହାର ମୂଲ୍ୟ ବଢ଼ିଥାଏ । ଗୁରୁଙ୍କ ଠାରୁ ଏପରି ବାକ୍ୟ ଶୁଣି ଶିଷ୍ୟଟିର ଯିବାକୁ ଇଚ୍ଛା ନ ଥିଲେ ମଧ୍ୟ ସେଠାରୁ ବାହାରିଲା । ସାଧୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା । ସାଧୁ ଆଶୀର୍ବାଦ ଦେଲେ, "ଯଶସ୍ୱୀ ହୁଅ, ଜନ ହିତରେ ନିଜକୁ ନିୟୋଜିତ କର ।" ଗୁରୁଙ୍କ ଆଶୀର୍ବାଦ ମଥାରେ ଘେନି ଶିଷ୍ୟଟି ଦୁଃଖରେ ସହିତ ଆଶ୍ରମ ତ୍ୟାଗ କରି ଜନବସତି ଆଡ଼କୁ ଗମନ କଲା । ନିଜର ପରିବାର ନିକଟରେ ପହଞ୍ଚିଲା । ପିତାମାତାଙ୍କ ପଦବନ୍ଦନା କଲା । ସେମାନେ ଆନନ୍ଦରେ ତାକୁ କୋଳକୁ ନେଲେ । ଏତେଦିନ ପରେ ଗୁରୁଙ୍କ ଆଶ୍ରମରୁ ପୁତ୍ର ଫେରିଛି । ପିତାମାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଅନେକ ଦିନ ଧରି ପୁତ୍ରକୁ ଦେଖି ନ ଥିବାର ଦୁଃଖ ଏବେ ଆନନ୍ଦରେ ପରିଣତ ହେଲା । ପୁତ୍ର ମଧ୍ୟ ପିତାମାତାଙ୍କୁ ଦେଖି ଆନନ୍ଦିତ ହେଲା । ସବୁ ଭିତରେ ସେ କିନ୍ତୁ ଗୁରୁଙ୍କର ବାକ୍ୟକୁ ମନ ମଧ୍ୟରେ ରଖିଥାଏ ।

ସେହି ରାଜ୍ୟର ଯିଏ ରାଜା ଥାଆନ୍ତି ସେ ପ୍ରଜାମାନଙ୍କୁ ବହୁତ ଭଲପାଆନ୍ତି । ପ୍ରଜାମାନଙ୍କର ମଙ୍ଗଳ ପାଇଁ ଅନେକ କୂଅ ପୋଖରୀ ଖୋଳାଇ ଆଆନ୍ତି । ତେଣୁ



Digitized by srujanika@gmail.com

ରାଜ୍ୟରେ ଜଳର ଅଭାବ ପଡ଼େ ନାହିଁ । ପାନ୍ଥଶାଳା ତିଆରି କରିଥାନ୍ତି । ବାହାରୁ କୌଣସି ବ୍ୟକ୍ତି ଆସିଲେ ସେଠାରେ ରାତ୍ରିଟି କଟାଇ ନିଜ କାମରେ ଯାଆନ୍ତି । ରହିବାରେ କୌଣସି ଅସୁବିଧା ଭୋଗ କରନ୍ତି ନାହିଁ । ରାଜା ପ୍ରଜାମାନଙ୍କର ଅସୁବିଧା ସଂପର୍କରେ ଜାଣିବାକୁ ବେଳେବେଳେ ଛଦ୍ମବେଶରେ ରାଜ୍ୟର ବିଭିନ୍ନ ଅଂଶକୁ ଯାଆନ୍ତି । ଥରେ ସାଧାରଣ ନାଗରିକ ବେଶରେ ସେ ଚାଲି ଥାଆନ୍ତି । ତାଙ୍କୁ ଭୀଷଣ ଶୋଷ ହେଉଥାଏ । ସେହି ଶିଷ୍ୟର ଘର ପାଖାପାଖି ସେ ଚାଲୁ ଥିଲେ । ତାଙ୍କ ଦ୍ୱାର ପାଖରେ କବାଟରେ ଆଘାତ କଲାରୁ ଶିଷ୍ୟଟି ଦ୍ୱାର ଖୋଲିଲା । ତା'ର ପିତାମାତା ଭିତରେ ଥିଲେ । ଛଦ୍ମବେଶୀ ରାଜା ତାକୁ ଜଳ ଦେବାକୁ କହିଲେ । ପରମ ଆନନ୍ଦରେ ଶିଷ୍ୟଟି ରାଜାଙ୍କୁ ଗୃହରେ ବସିବାକୁ ଅନୁରୋଧ କରି ଜଳ ଆଣିବାକୁ ଭିତରକୁ ଗଲା । ରାଜା ଅପେକ୍ଷା କଲେ । ଶିଷ୍ୟଟି ମାଆଙ୍କୁ କହିଲା ଯେ ଜଣେ ଆଗନ୍ତୁକ ଜଳ ଉଦ୍ଦେଶ୍ୟରେ ବସିଛନ୍ତି । ଯଥାଶୀଘ୍ର ମାଆ ପୁଅକୁ ଜଳ ନେଇ ଅତିଥିଙ୍କୁ ଦେବା ନିମନ୍ତେ କହିଲେ । ସେ ଶୀତଳ ଜଳ ଆଣି ରାଜାଙ୍କୁ ଦେଲା । ରାଜା ଜଳପାନ କରି ତୃଷା ନିବାରଣ କଲେ । ସେ ଥକି ପଡ଼ିଥିଲେ । କିଛି ସମୟ ବିଶ୍ରାମ ନେବାକୁ ତାଙ୍କ ମନ ଚାହୁଁଥିଲା । ତଥାପି ସେହି ଗୃହରୁ





Digitized by srujanika@gmail.com



ଯିବାଲାଗି ସେ ଉଠିଲେ । ଶିଷ୍ୟଟି ଦେଖିଲା ଯେ ଆଗନ୍ତୁକ ଅତି କ୍ଳାନ୍ତ ଦେଖା ଯାଉଛନ୍ତି । ସେଠାରେ କିଛିସମୟ ବିଶ୍ରାମ ନେଇ ଯିବା ଲାଗି ସେ ଅନୁରୋଧ କଲା । ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେ ଜାଣି ପାରିଲେ ଯେ ସେ କ୍ଳାନ୍ତ ହୋଇଯାଇଛନ୍ତି ବୋଲି ଏହି ଯୁବକଟି ଅନୁଭବ କରିପାରୁଛି । ତା' ସହିତ ସେ ମହତ ସ୍ୱଭାବର । ନଚେତ ନିଜ ତରଫରୁ ବିଶ୍ରାମ ନେବାକୁ ଅନୁରୋଧ କରି ନଥାନ୍ତା । ରାଜା ତାକୁ ଧନ୍ୟବାଦ ଦେଲେ । କିଛିସମୟ ବିଶ୍ରାମ କରି ସେଠାରୁ ବିଦାୟ ନେଲେ ।

ରାଜ ନବରକୁ ଆସି ରାଜା ସେହି ଯୁବକଟିର ସ୍ୱଭାବ ଭୁଲିପାରି ନଥାନ୍ତି । ଶାନ୍ତ ସୁନ୍ଦର ରୂପକୁ ମନେପକାଉ ଥାଆନ୍ତି । ରାଜକର୍ମଚାରୀଙ୍କୁ ପଠାଇ ସେ ସେହି ଯୁବକଟିକୁ ଡକାଇ ଆଣିଲେ । ତା' ସହିତ କଥାବାର୍ତ୍ତା କରି ତାକୁ ଏକ ଭଲ ପଦବୀରେ ନିଯୁକ୍ତି ଦେଲେ । ସେ ମଧ୍ୟ ନିଷ୍ଠାର ସହିତ ନିଜର କାର୍ଯ୍ୟ କଲା । ପ୍ରଜାମାନେ ତାକୁ ଆଦର କଲେ । ଯେଉଁ ଅଞ୍ଚଳର କାମ ତଦାରଖ କରିବାରେ



Digitized by srujanika@gmail.com

ସେ ନିଯୁକ୍ତି ପାଇଥିଲା ଅଳ୍ପଦିନ ମଧ୍ୟରେ ସେହି ଅଞ୍ଚଳ ଉନ୍ନତି କରିବାରେ ଲାଗିଲା । ପ୍ରଜାମାନେ କାମ କରିବାରେ ଆଗ୍ରହୀ ହେଲେ ଓ କୃଷିଉତ୍ପାଦନ ଭଲ ହେଲା । ରାଜା ଏସବୁ ଦେଖି ଶୁଣି ଯୁବକଟିକୁ ପ୍ରଶଂସା କଲେ । ରାଜାଙ୍କର ସନ୍ତାନସନ୍ତତି ନ ଥିବାରୁ ସେ ମନେମନେ ଚିନ୍ତାରେ ଥିଲେ । ରାଜସିଂହାସନରେ ଉପଯୁକ୍ତ ବ୍ୟକ୍ତିକୁ ବସାଇବା ତାଙ୍କର ସବୁଠାରୁ ବଡ଼ ଚିନ୍ତା ଥିଲା । ଏହି ଯୁବକଟିର କାର୍ଯ୍ୟକଳାପ, କଥାବାର୍ତ୍ତା ଦେଖି ସେ ମୁଗ୍ଧ ହୋଇଥିଲେ । ପାତ୍ରମନ୍ତ୍ରୀଙ୍କ ସହିତ ପରାମର୍ଶ କରି ଏହି ଯୁବକଟିକୁ ରାଜସିଂହାସନରେ ବସାଇବାର ଇଚ୍ଛାପ୍ରକାଶ କରିବାରୁ ସେମାନେ ଆନନ୍ଦରେ ତାହା ସମର୍ଥନ କଲେ । କାରଣ ସମସ୍ତେ ଯୁବକର ବ୍ୟବହାରରେ ଖୁସି ଥିଲେ । ଭବିଷ୍ୟତରେ ଯୁବକଟି ରାଜା ହୋଇ ପ୍ରଜାଙ୍କ ହିତରେ କାର୍ଯ୍ୟକଲା ।





Digitized by srujanika@gmail.com

# ସୁଖ ସ୍ୱପ୍ନ

ଜଣେ ବ୍ୟବସାୟୀ ତାଙ୍କ ନିକଟରେ ଦୁଇଟି ବଳଦ, ଦୁଇଟି ଗଧ ରଖିଥାନ୍ତି । ସେ ଜଣେ କୃଷକ । ତେଣୁ କୃଷିଜାତ ଦ୍ରବ୍ୟର ବ୍ୟବସାୟ କରନ୍ତି । ତାଙ୍କ ପୁଅ ଦୁଇଜଣ ତାଙ୍କୁ କାମରେ ସାହାଯ୍ୟ କରନ୍ତି । ସେମାନେ ଜମିରୁ ଯାହା ଅମଳ କରନ୍ତି ଆଖପାଖର ବଜାରରେ ବିକ୍ରି କରନ୍ତି । ତାଙ୍କ ଜିନିଷର ଚାହିଦା ମଧ୍ୟ ବଜାରରେ ଭଲ ଥାଏ । ବାପପୁଅଙ୍କ ଭିତରେ ବୁଝାମଣା ଭଲ ଥାଏ । ଜମିରୁ ଫସଲ ଅମଳ କରା ହେଲା ବେଳେ ବଳଦଙ୍କୁ ଶଗଡ଼ରେ ଯୋଚି ସାଙ୍ଗରେ ନେଇଥାନ୍ତି । ସେମାନେ ସବୁ ଜିନିଷ ବୁହାଇ ଘରକୁ ଆଣନ୍ତି । ବଜାରକୁ ଗଲାବେଳେ ଗଧ ପିଠିରେ ଜିନିଷ ଲଦି ନିଆଯାଏ ।





Digitized by srujanika@gmail.com

ବାପ ପୁଅ ତିନିଜଣ ମିଳିମିଶି କାମ କରନ୍ତି । ପୁଅ ଦୁଇଜଣ ବାପାଙ୍କର ପରାମର୍ଶକୁ ଗ୍ରହଣ କରନ୍ତି । ଯେତେବେଳେ ଯେଉଁ କଥା କହନ୍ତି ସେହି ଅନୁସାରେ କାର୍ଯ୍ୟ ହୁଏ । ବାପା ହେଲେ ଘରର ମୁଖ୍ୟ ମାଆ ମଧ୍ୟ ଦୁଇପୁଅଙ୍କ ପ୍ରତି ସମାନ ସ୍ନେହ କରନ୍ତି । ବୋହୂ ଦୁଇଜଣ ମିଳିମିଶି ଘରର କାମ କରନ୍ତି । ଶାଶୁ ଓ ବୋହୂ ଦୁଇଜଣଙ୍କ ଉପରେ ଦୁଇ ବଳଦ ଏବଂ ଦୁଇ ଗଧଙ୍କର ଖାଇବା ପିଇବା ଦାୟିତ୍ୱ ରହିଥାଏ । ବାପପୁଅ ଗୁହାଳକୁ ପରିଷ୍କାରପରିଚ୍ଛନ୍ନ କରି ରଖନ୍ତି । ବାହାରୁ ଘାସ, କୁଟା ଇତ୍ୟାଦି ଆଣି ଦିଅନ୍ତି । ବାକି ଯାହା ଖାଦ୍ୟ ଶାଶୁବୋହୂ ଯୋଗାଡ଼ କରି ଏହି ପଶୁମାନଙ୍କୁ ଖାଇବାକୁ ଦିଅନ୍ତି । ବଳଦ ଦୁଇଟି ଏବଂ ଗଧ ଦୁଇଟି ଭାରି ଚିକ୍କଣ ଡଉଲଡାଉଲ ଦିଶୁ ଥାଆନ୍ତି ।

ବଳଦ ଦୁଇଟି ଭାରି ସରଳ, ନିଷ୍କପଟ । ସେମାନେ ତାଙ୍କ କାମ ଠିକ୍ ଭାବରେ କରିବା ପାଇଁ ତତ୍ପର । ମାଲିକ ତାଙ୍କୁ କେତେ ଆଦର ଯତ୍ନରେ ରଖିଛନ୍ତି ଭାବି ସେମାନେ ମାଲିକଙ୍କ ପ୍ରତି ଭାରି କୃତଜ୍ଞ ହୋଇ ରହିଥାନ୍ତି । ଅନ୍ୟ କୃଷକଙ୍କ ବଳଦ ପାଞ୍ଚଣରେ ପାହାର ଖାଇ କାମ କଲାବେଳେ ଏମାନଙ୍କୁ ଚାଲ କହିଲେ ଏମାନେ ଦୌଡ଼ନ୍ତି । ମାଲିକଙ୍କୁ ବାଡ଼ି ଉଠେଇବାକୁ ପଡ଼େ ନାହିଁ । ହେଲେ ଗଧ ଦୁଇଟା ଅଳସୁଆ । ତା' ସହିତ ବଳଦଙ୍କ ଉପରେ ତାଙ୍କର ସବୁବେଳେ ହିଂସା । ସେମାନେ ଭାବନ୍ତି ମାଲିକ ଘର ବଳଦଙ୍କୁ ଅଧିକ ସ୍ନେହ କରୁଛନ୍ତି । ସେମାନଙ୍କୁ କିଛି ଗାଳିଗୁଲଜ କରୁ ନାହାନ୍ତି । ଖାଲି ଆମକୁ ଗାଳି କରୁଛନ୍ତି ।

ଆମେ ଏଠି ଅଧିକ ଖଟୁଛୁ । ପୁଣି ଗାଳିମନ୍ଦ ଖାଉଛୁ । ଏମିତି ଭାବିଭାବି ଦୁଇ ଗଧ ଦୁଃଖସୁଖ ହେଲାବେଳେ ମାଲିକଙ୍କ ଉପରେ ରାଗନ୍ତି । ତାଙ୍କ ଘରସାରା ଲୋକଙ୍କୁ ବିରକ୍ତି ହୁଅନ୍ତି । ଦୁଇ ବଳଦ ଆରାମରେ ଅଛନ୍ତି ଭାବି ସେମାନଙ୍କ ଉପରେ ରାଗ କରନ୍ତି । ଏମିତି ସବୁଦିନେ ସେମାନଙ୍କ ବିରୋଧରେ ଗପୁଗପୁ ଗୋଟିଏ ଗଧର ମୁଣ୍ଡରେ ଏକ ଦୁଷ୍ଟବୁଦ୍ଧି ଆସିଲା । ସେ ଆର ଗଧକୁ କହିଲା ଯେ ଦୁହେଁ ମିଶି ଏ ମାଲିକ ଘରୁ ପଳାଇ ଗଲେ ବାହାରେ ସ୍ୱାଧୀନ ଭାବରେ ବଞ୍ଚିବେ । କିଛି କାମ କରିବାକୁ ପଡ଼ିବ ନାହିଁ । ଜଙ୍ଗଲିଆ ଜାଗାକୁ ଚାଲିଗଲେ କେତେ



Digitized by srujanika@gmail.com

ଖାଇବାକୁ ମିଳିବ । ଏତେ ଗାଳିମନ୍ଦ ଶୁଣି ଖଟିଖଟି ଏଠି ଦିନ ଯାଉଚି । ଏଠୁ ଚାଲିଯିବାର ଯୋଜନାରେ ଦୁହେଁ ଲାଗି ପଡ଼ିଲେ । ଭବିଷ୍ୟତ ପାଇଁ କେତେ ସୁଖ ସ୍ୱପ୍ନ ବୁଣିଗଲେ । ଏହିପରି ସୁଖର ସ୍ୱପ୍ନ ଦେଖୁଦେଖୁ ସତକୁ ସତ ଦୁହେଁ ଦିନେ ଘର ଛାଡ଼ି ଚାଲିଗଲେ । ମାଲିକ ଘର ସମସ୍ତଙ୍କର ମୁଣ୍ଡ ଖରାପ । ଦୁଃଖରେ ସେଦିନ ତାଙ୍କର ଚୁଲି ଜଳିଲା ନାହିଁ । ସମସ୍ତେ ଉପାସ ରହିଲେ । ବଳଦ ଦୁଇଟା ମଧ୍ୟ ଗଧଙ୍କ ପାଇଁ ମନ ଦୁଃଖ କରୁଥାନ୍ତି । ଯାହାହେଲେ ବି ଏକାଠି ଥିଲେ । ସବୁଦିନ ଦେଖାଚାହାଁ ହେଉଥିଲା । କୁଆଡ଼େ ଯିବେ, କେଉଁଠି ଥିବେ, କ'ଣ ଖାଉଥିବେ ଭାବି ସେ ଦୁଇଜଣ ଡହଳ ବିକଳ ହେଉଥାନ୍ତି । କିଛି କାରଣ ନ ଥାଇ କାହିଁକି ଦୁଇଜଣ କୁଆଡ଼େ ଚାଲିଗଲେ ? ମାଲିକ ଘର ବାପପୁଅ ତିନିଜଣଯାକ ଗଧକୁ ଖୋଜିବାକୁ ବାହାରିଲେ । ଦିନ ଗଡ଼ି ସନ୍ଧ୍ୟା ହେଲା, ରାତି ହେଲା । ହେଲେ ଗଧ ଦୁଇଟିଙ୍କର ଖୋଜଖବର ମିଳିଲା ନାହିଁ । ଶେଷକୁ ନିରାଶ ହୋଇ ଘରକୁ ଫେରିଲେ । ଶାଶୁ, ବୋହୂ ତିନିଜଣ ଗଧଙ୍କ ଚିନ୍ତାରେ ରୋଷେଇ କରି ନଥାନ୍ତି । ବାପ ପୁଅ ତିନିଜଣଙ୍କ ଆସିବା ବାଟକୁ ଚାହିଁ ରହିଥାନ୍ତି । ଗଧଙ୍କ ବିନା ସେମାନେ ଫେରିବା ଦେଖି ଏମାନେ ବହୁତ କାନ୍ଦିଲେ ।





Digitized by srujanika@gmail.com

ସେଦିନ ରାତିରେ ଗଧ ଦୁଇଟି ଜଙ୍ଗଲରେ ଏପଟସେପଟ ହେଉଥାନ୍ତି । ଏତିକି ବେଳେ ବାଘର ହେଣ୍ଟାଳ ଶୁଭିଲା । ସେମାନେ ପତ୍ର, ଫଳ ଖାଇବେ କ'ଣ ? ଏକା ନିଶ୍ୱାସରେ ମାରିଲେ ଡିଆଁ । ଦୌଡ଼ିଛନ୍ତି ଏକମୁହାଁ ହୋଇ । ଛାନିଆରେ ଦୌଡ଼ି ଦୌଡ଼ି କେତେ ବାଟ ପଳେଇଲେ ଠିକଣା ନାହିଁ । ତା' ପରେ ସକାଳ ହେଲାବେଳକୁ ସେମାନେ ଦେଖିଲେ ଗୋଟିଏ ଲୋକର ଘର ପାଖରେ ଠିଆ ହୋଇଛନ୍ତି । ଭୋକରେ ପେଟ ଆଉଟୁପାଉଟୁ ହୋଇଯାଉଛି । ସେ ଲୋକଟି ସୁନ୍ଦର ଗଧ ଦୁଇଟିକୁ ଦେଖି ବାନ୍ଧି ରଖିବ ବୋଲି ତା' ପୁଅକୁ ଡାକି ଚଞ୍ଚଳ ଦଉଡ଼ି ଆଣିବାକୁ ବରାଦ କଲା । ଏହା ଶୁଣି ଦୁଇ ଗଧ ପ୍ରାଣ ବିକଳରେ ପୁଣି ଦୌଡ଼ିବାରେ ଲାଗିଲେ । ଲୋକଟି ଏମାନଙ୍କ ପଛେପଛେ ଦୁଉଡ଼ି ଦଉଡ଼ି ଆସିଲା ହେଲେ ଧରି ପାରିଲା ନାହିଁ । ନିରାଶ ହୋଇ ଘରକୁ ଲେଉଟି ଗଲା । ଦୁଇ ଗଧଙ୍କର ସୁଖସ୍ୱପ୍ନ ସରିଗଲା । ପ୍ରାଣକୁ ବଞ୍ଚାଇ ଦଉଡ଼ି ଦଉଡ଼ି ନିଜ ମାଲିକର ଘର ଆଗରେ ଆସି ଠିଆ ହେଲେ । ତାଙ୍କ ବୋବେଇବା ଶବ୍ଦରେ ସମସ୍ତେ ଘରୁ ବାହାରି ଆସିଲେ । ଦୁଇ ଗଧଙ୍କୁ ଆଉଁଷି ପକାଇଲେ । ବଳଦ ଦୁଇଟି ଭାରି ଖୁସି ହୋଇଗଲେ । ଗଧ ଦୁଇଜଣଙ୍କର ଆଖିରୁ ଲୁହ ଗଡ଼ିଗଲା । ସେମାନେ ଯାହାକୁ ସୁଖସ୍ୱପ୍ନ ଭାବି ଚାଲି ଯାଇଥିଲେ ବାସ୍ତବରେ ସେଥିପାଇଁ କେତେ ଦୁଃଖ ପାଇଲେ ବୁଝି ପାରିଲେ । ନିଜର ଭୁଲ୍ ବୁଝି ସେମାନେ ଅନୁତାପ କଲେ ଓ ସେହିଦିନ ଠାରୁ ଅଳସୁଆ ହେବା ଛାଡ଼ି ମନ ଦେଇ କାମ କଲେ । ବଳଦ ଦୁହିଁଙ୍କୁ ସ୍ନେହ କଲେ । ସମସ୍ତେ ମନଖୁସିରେ ରହିଲେ । ମାଲିକ ଗଧ ଦୁହିଁଙ୍କୁ ବେଶ୍ ସ୍ନେହଶ୍ରଦ୍ଧା କଲେ ।





Digitized by srujanika@gmail.com

# ନମ୍ରତା

ବିନାୟକ ଜଣେ କୁଶଳୀ ବୁଣାକାର ଥିଲେ । ସେ ଯେଉଁ ବସ୍ତ୍ର ବୁଣି ପାରୁଥିଲେ ସେହିପରି ବସ୍ତ୍ର ତାଙ୍କ ସମୟର ବୁଣାକାର ସହଜରେ ବୁଣିପାରୁ ନଥିଲେ । ତାଙ୍କ ଅଧୀନରେ କୋଡ଼ିଏ ଜଣ ବୁଣାକାର କାମ କରୁଥିଲେ । ବିନାୟକ ଆବଶ୍ୟକୀୟ ପରାମର୍ଶ ଦେଇ ସେମାନଙ୍କୁ କାମର ନିର୍ଦ୍ଦେଶ ଦେଉଥିଲେ । ସେହି ବୁଣାକାରମାନେ ବିନାୟକଙ୍କୁ ଗୁରୁଜ୍ଞାନ କରି ତାଙ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରୁଥିଲେ । ନିକଟବର୍ତ୍ତୀ ଅଞ୍ଚଳର ଜନସାଧାରଣ ତ ତାଙ୍କ କାର୍ଯ୍ୟ ସମ୍ବନ୍ଧରେ ଜାଣିଥିଲେ । ଦୂରଦୂରାନ୍ତରୁ ମଧ୍ୟ ଅନେକ ଲୋକ ଆସି ତାଙ୍କୁ କାମ ବରାଦ ଦେଇ





Digitized by srujanika@gmail.com

ଯାଉଥିଲେ । କେତେ ମାନ୍ୟଗଣ୍ୟ ବ୍ୟକ୍ତି ନିଜର କାମପାଇଁ ତାଙ୍କ ନିକଟକୁ ଆସୁଥିଲେ । ବିନାୟକ ଯାହା ଠାରୁ କାମ ରଖୁଥିଲେ ତାଙ୍କୁ ଶେଷ କରିବାର ନିର୍ଦ୍ଦିଷ୍ଟ ଦିନ ସମୟ ଧାର୍ଯ୍ୟ କରି କହୁଥିଲେ ଏବଂ ସେହି ଅନୁସାରେ କାର୍ଯ୍ୟ ଶେଷକରି ତାଙ୍କୁ ଦେଉଥିଲେ । ନିଜର କଥା ଠିକ୍ ରଖୁଥିଲେ । ଗ୍ରାହକଙ୍କୁ ବାରମ୍ୱାର ଦଉଡ଼ିବାକୁ ପଡୁ ନଥିଲା । ତାଙ୍କ ଅଧୀନରେ କାମ କରୁଥିବା ବୁଣାକାରମାନେ ଖୁବ୍ କାର୍ଯ୍ୟଦକ୍ଷ ଥିଲେ ।

ଲୋକମାନଙ୍କ ପ୍ରତି ବିନାୟକଙ୍କର ବ୍ୟବହାର ଥିଲା ନମ୍ର । ତାଙ୍କର ନମ୍ରତା ଯୋଗୁଁ ବହୁଲୋକ ତାଙ୍କ ନିକଟକୁ ଆସୁଥିଲେ ଏବଂ କେବେହେଲେ ତାଙ୍କର କାମର ଅଭାବ ହେଉ ନଥିଲା । ତାଙ୍କ ସହିତ ଆଉ କୋଡ଼ିଏ ଜଣଙ୍କର ପରିବାରର ଜୀବିକାର୍ଜନ ଏହି କାମରୁ ହୋଇପାରୁ ଥିଲା । ଗର୍ବ ଅହଂକାର ତାଙ୍କୁ ଟିକିଏ ହେଲେ ଛୁଇଁ ନଥିଲା । ତା' ସହିତ ସୁନ୍ଦର କାର୍ଯ୍ୟଶୈଳୀ ତାଙ୍କୁ ପ୍ରଶଂସିତ କରାଇଥିଲା । ବିନାୟକଙ୍କର ଆଉଜଣେ ବୁଣାକାର ବନ୍ଧୁ ଥିଲେ ଶଙ୍କର । ପିଲାଟି ଦିନରୁ ଉଭୟଙ୍କର ବନ୍ଧୁତ୍ୱ ଘନିଷ୍ଠ ଥିଲା । ଏକା ସ୍ଥାନରେ ଘର । ଦୁହେଁ ଏକାଠି ଖେଳିଛନ୍ତି, ବୁଲିଛନ୍ତି, ପାଠ ପଢ଼ିଛନ୍ତି । ଗୋଟିଏ ବିଦ୍ୟାକୁ ମଧ୍ୟ ଆଦରି ନେଇଛନ୍ତି । ଶଙ୍କର ଯେତେବେଳେ ବଡ଼ ହେଲେ ସେ ମଧ୍ୟ ଭଲ ବୁଣାକାର ହିସାବରେ ପ୍ରସିଦ୍ଧି ଅର୍ଜନ କଲେ । ବିନାୟକଙ୍କ ସହିତ ତାଙ୍କର ବନ୍ଧୁତ୍ୱ ପୂର୍ବପରି ଅତୁଟ ଥିଲା ।

ଶଙ୍କର ଭଲ ବୁଣାକାର ଥିଲେ ମଧ୍ୟ ଯେଉଁ ବୁଣାକାର ତାଙ୍କ ଅଧୀନରେ କାମ କରୁଥିଲେ ସେମାନେ ଅଳ୍ପଦିନ କାମ କରି କାମ ଛାଡ଼ିଦେଇ ଚାଲି ଯାଉଥିଲେ । ପୁଣି ନୂଆଲୋକ ଖୋଜି ଆଣିବା ଭିତରେ କେତେ ଦିନ ଚାଲି ଯାଉଥିଲା । ଲୋକଙ୍କୁ ଠିକ୍ ସମୟରେ କାମ ନ ଦେବା ଦ୍ୱାରା ସେମାନେ ଅସନ୍ତୁଷ୍ଟ ହୋଇ ଫେରୁ ଥିଲେ । ତିନି ଚାରିଥର ଆସିବାକୁ କାହାର ବା ଧୈର୍ଯ୍ୟ ଥାଏ ! ଏପରି କରିବା ଦ୍ୱାରା ଗ୍ରାହକ ସଂଖ୍ୟା କମି ଯାଉଥିଲା । ଏଥିରେ ବ୍ୟବସାୟ ଭଲ ଚାଲିବ କିପରି ?



Digitized by srujanika@gmail.com

ଦିନେ ଶଙ୍କର ଓ ବିନାୟକ ଦୁଇବନ୍ଧୁ ଏକାଠି ହୋଇ କଥା ହେଉଥାନ୍ତି । ଶଙ୍କରଙ୍କର ମୁହଁ ଶୁଖି ଯାଇଥାଏ । ବିନାୟକ ବନ୍ଧୁଙ୍କର ଶୁଖିଲା ମୁହଁ ଦେଖି ତା'ର କାରଣ ପଚାରିଲେ । ଶଙ୍କର ଦୁଃଖର ସହିତ ନିଜର ବ୍ୟବସାୟରେ କିପରି କ୍ଷତି ହେଉଛି, ତାଙ୍କୁ ଗ୍ରାହକଙ୍କ ଦ୍ୱାରା ଅପମାନିତ ହେବାକୁ ପଡୁଛି ତାହା ଜଣାଇଲେ । ବିନାୟକ ତାଙ୍କୁ ସାହସ ଦେଲେ, ଧୈର୍ଯ୍ୟ ଦେଲେ ଯେ ବ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ଠିକ୍ ହୋଇଯିବ । କଥାହେଲା ଯେ ସେ ଥରେ ବନ୍ଧୁଙ୍କର ବ୍ୟବସାୟ ଅନୁଷ୍ଠାନକୁ ଯିବେ । କ'ଣ ଅସୁବିଧା ରହୁଛି ବୁଲି ଦେଖି ଆସିଲା ପରେ ଜାଣିପାରିବେ । ଏପରି ବୁଝାଇ ଶୁଝାଇ ବନ୍ଧୁଙ୍କୁ ବିଦାୟ ଦେଲେ ।

ବିନାୟକଙ୍କର ତାଙ୍କ ବନ୍ଧୁଙ୍କ ଦୁଃଖ କଥା ମନରେ ଥାଏ । ସେ ଥରେ ସମୟ କରି ଶଙ୍କରଙ୍କର ବ୍ୟବସାୟ ପ୍ରତିଷ୍ଠାନରେ ପହଞ୍ଚି ଗଲେ । ଦେଖିଲେ ଯେଉଁ ବୁଣାକାରମାନେ ସେଠାରେ କାର୍ଯ୍ୟ କରୁଛନ୍ତି ସେମାନଙ୍କ ମନରେ ଉତ୍ସାହ ନାହିଁ । ଶୁଖିଲା ମୁହଁରେ ଯେମିତି ପାରେ ସେମିତି କାମ କରିଦେବାକୁ ଚେଷ୍ଟା କରୁଛନ୍ତି । ଶଙ୍କର ନିଜେ କାର୍ଯ୍ୟ କରୁଛନ୍ତି । ବଡ଼ପାଟିରେ ସେହି ବୁଣାକାରମାନଙ୍କୁ ପାଟିତୁଣ୍ଡ କରି କାମ ବରାଦ କରୁଛନ୍ତି । କାହା ଉପରେ ରାଗି ବିରକ୍ତ ହେଉଛନ୍ତି । ତାଙ୍କ ଭିତରୁ କିଏ ଶୁଣି ନ ଶୁଣିଲା ପରି ହୋଇ ଚାଲି ଯାଉଛି । ଶଙ୍କର ଆହୁରି ବିରକ୍ତ ହେଉଛନ୍ତି । ବିନାୟକ ଏସବୁ ଦେଖି ସେଠାରୁ ଚୁପ୍‌ଚାପ୍ ଫେରି ଆସିଲେ । ପୁଣିଥରେ ଯେତେବେଳେ ସେମାନଙ୍କର ଭେଟ ହେଲା ସେ ଶଙ୍କରଙ୍କୁ ବୁଝାଇ କହିଲେ, 'ତମ ପାଖରେ ଯେଉଁମାନେ କାର୍ଯ୍ୟ କରୁଛନ୍ତି ସେମାନେ ମଧ୍ୟ ତମରି ପରି ମଣିଷ । ବ୍ୟବହାରରେ ନମ୍ରତା, ସ୍ନେହ ରହିଲେ ସେମାନଙ୍କର କାର୍ଯ୍ୟ ପ୍ରତି ଉତ୍ସାହ ଆସିବ । ଆଗ୍ରହ ଆସିବ । ମାଲିକ ହିସାବରେ ତାଙ୍କୁ ଯଦି ତୁମେ ବିରକ୍ତ ହୋଇ କଥାବାର୍ତ୍ତା କରିବ ସେମାନେ କାର୍ଯ୍ୟ କରିବାରେ ଆଗ୍ରହ ପ୍ରକାଶ କରିବେ ନାହିଁ । ଏଠାରୁ ଚାଲିଯାଇ ଅନ୍ୟ ସ୍ଥାନରେ କାର୍ଯ୍ୟ କରିବାକୁ ଇଚ୍ଛା କରିବେ । ଆମକୁ କେହି ସବୁବେଳେ ବିରକ୍ତ ହୋଇ କଥାବାର୍ତ୍ତା କଲେ ଆମେ କ'ଣ ଖୁସି ହୋଇପାରିବା ? ଆମେ ଯେମିତି ସମସ୍ତେ ସେମିତି । ସେଇଥିପାଇଁ ଲୋକମାନେ



Digitized by srujanika@gmail.com

ବାରମ୍ବାର ଛାଡ଼ି ଚାଲି ଯାଉଛନ୍ତି । ପୁଣି ନୂଆ ଲୋକ ଖୋଜିବାରେ ସମୟ ଯାଉଛି । ତାକୁ ଠିକ୍ ଭାବରେ କାମ ଶିଖାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେଉଛି । ଏହାଦ୍ୱାରା ଅର୍ଥ ନଷ୍ଟ ହେଉଛି । ସମୟ ଅନୁସାରେ ଗ୍ରାହକଙ୍କୁ ତାଙ୍କ ବରାଦ ମୁତାବକ କାମକରି ତୁମେ ଯୋଗାଇ ପାରୁ ନାହଁ । ତେଣୁ ବ୍ୟବସାୟ ଠିକ୍ ଭାବରେ ଚାଲି ପାରୁନାହିଁ । ଶଙ୍କର ବନ୍ଧୁଙ୍କ କଥାର ସତ୍ୟତାକୁ ଅନୁଭବ କରିପାରିଲେ । ନିଜ ଅଧୀନରେ କାମ କରୁଥିବା ବୁଣାକାରମାନଙ୍କୁ ନରମ ଓ ସ୍ନେହପୂର୍ଣ୍ଣ କଥାବାର୍ତ୍ତା କଲେ । କିଛିଦିନ ଭିତରେ ତାଙ୍କର ବ୍ୟବସାୟର ଅବସ୍ଥା ସୁଧୁରି ଗଲା । ବୁଣାକାରମାନେ ବାରମ୍ବାର ଛାଡ଼ି ଚାଲିଗଲେ ନାହିଁ । ଗ୍ରାହକଙ୍କର କାମ ଠିକ୍ ସମୟରେ ଦିଆଗଲା । ତେଣୁ ଗ୍ରାହକ ସଂଖ୍ୟା ବଢ଼ିଲା । ଶଙ୍କର ବିନାୟକଙ୍କୁ ନିଜର କୃତଜ୍ଞତା ଜଣାଇଲେ । ବାସ୍ତବରେ ନମ୍ରତା ଏକ ମହାନ ଗୁଣ ।





Digitized by srujanika@gmail.com

# ସାଧନା

ମୋହନ ବଳବନ୍ତରାୟ ଥିଲେ ଅଞ୍ଚଳର ପ୍ରତିଷ୍ଠିତ ବ୍ୟକ୍ତି । ବୁଦ୍ଧି, ବିଦ୍ୟା, ଧନ କୌଣସିରେ ତାଙ୍କର ଉଣା ନଥିଲା । ସେ ସମସ୍ତଙ୍କର ଆଦର ସମ୍ମାନ ଲାଭ କରୁଥିଲେ । ତାଙ୍କର ଥିଲେ ଦୁଇ କନ୍ୟା, ମୋହନ ବଳବନ୍ତରାୟ ଦୁଇଜଣଙ୍କ ନାମ ରଖିଥିଲେ ଉଷା ଓ ନିଶା । ସେ ଥରେ ଚିନ୍ତାକଲେ କନ୍ୟା ଦୁହିଁଙ୍କୁ ସଙ୍ଗୀତ ବିଦ୍ୟା ଶିକ୍ଷା ଦେବେ । ସେଥିପାଇଁ ଉତ୍ତମ ସଙ୍ଗୀତ ଶିକ୍ଷକ ଖୋଜିଲେ । ଖୋ' ୀଖୋଜି ପରେ ଜଣେ ସଙ୍ଗୀତ ଶିକ୍ଷକଙ୍କ ସନ୍ଧାନ ପାଇଲେ । ତାଙ୍କୁ ନିଜ ଗୃହକୁ ଆସି ଉଷା ଓ ନିଶାଙ୍କୁ ସଙ୍ଗୀତ ଶିଖାଇବାକୁ ଅନୁରୋଧ କଲେ । ସେଥିପାଇଁ ଯାହା ଅର୍ଥ ଆବଶ୍ୟକ ସେ ଦେବାକୁ ପ୍ରସ୍ତୁତ ଥିଲେ । ସଙ୍ଗୀତ ଶିକ୍ଷକ କିନ୍ତୁ ଅର୍ଥ ଉପରେ





Digitized by srujanika@gmail.com

ଗୁରୁତ୍ୱ ଦେଲେ ନାହିଁ । ସେ ଅର୍ଥଲୋଭୀ ନ ଥିଲେ । ଅତି ସାଧାରଣ ଭାବରେ ଚଳୁଥିଲେ । ସଙ୍ଗୀତ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା । ସେଥିପାଇଁ ପ୍ରତିଦିନ ସେ ସାଧନା କରୁଥିଲେ । ମୋହନ ବଳବନ୍ତ ରାୟଙ୍କ ଅନୁରୋଧ କ୍ରମେ ସେ ତାଙ୍କ ଗୃହକୁ ଆସିବାକୁ ସମ୍ମତ ହେଲେ । କିନ୍ତୁ ସର୍ତ୍ତ ରଖିଲେ ଯେ ଚାରିମାସ ମଧ୍ୟରେ ଯଦି ପିଲାଙ୍କୁ ସେ ଠିକ୍ ଭାବରେ ତାଙ୍କ ଶିକ୍ଷାର ପ୍ରଭାବ ପଡ଼ିଥିବାର ଅନୁଭବ ନ କରିବେ ତେବେ ଆଉ ସଙ୍ଗୀତ ଶିକ୍ଷା ଦେବାକୁ ଯିବେ ନାହିଁ । ମୋହନ ବଳବନ୍ତ ରାୟ ଏହି ପ୍ରସ୍ତାବରେ ରାଜି ହୋଇଗଲେ ।

ଉଷା ଓ ନିଶାଙ୍କର ସଙ୍ଗୀତ ଶିକ୍ଷା ଆରମ୍ଭ ହୋଇଗଲା । ଦୁଇ ଭଉଣୀ ଶିକ୍ଷକ ମହାଶୟଙ୍କୁ ଯଥାବିଧି ସମ୍ମାନ କରୁଥାନ୍ତି ଓ ସଙ୍ଗୀତ ପ୍ରତି ଆଗ୍ରହ ଦେଖାଇ ଶିଖୁ ଥାନ୍ତି । ମାସକ ଭିତରେ ଗୁରୁ ଦୁଇ ଶିଷ୍ୟାଙ୍କର ପରୀକ୍ଷା ନେଲେ । ଯାହାଯାହା ଶିଖାଇ ଥିଲେ ସେସବୁ ମଧ୍ୟରୁ ଯେଉଁଟି ଉଷାକୁ ଗାଇବାକୁ କହିଲେ ସେ ଠିକ୍ ଭାବରେ ବୋଲି ଶୁଣାଇ ଦେଲା । ହେଲେ ନିଶା ଠିକ୍‌ରେ ବୋଲି ଶୁଣାଇ ପାରିଲା ନାହିଁ । 'ଗୁରୁଜୀ ବିରକ୍ତ ହେଲେ ନାହିଁ । ଆସନ୍ତା ଥରକୁ ଠିକ୍ ଭାବରେ ଅଭ୍ୟାସ କରିବାକୁ କହିଲେ । ନିଶା ମଥା ହଲାଇ ସମ୍ମତି ଜଣାଇଲା ।

ଉଷା ପ୍ରତିଦିନ ସକାଳୁ ଉଠି ସଙ୍ଗୀତ ଅଭ୍ୟାସ କରେ । ସଙ୍ଗୀତ ଅଭ୍ୟାସ କରିସାରିଲେ ଅନ୍ୟାନ୍ୟ କାର୍ଯ୍ୟ କରେ । ତେଣୁ ସଙ୍ଗୀତ ଅଭ୍ୟାସ ତା'ର ନିୟମିତ ଚାଲିଥାଏ । ସେଥିପାଇଁ ସେ ନିର୍ଦ୍ଦିଷ୍ଟ ସମୟ ରଖିଥାଏ । ନିର୍ଦ୍ଦିଷ୍ଟ ସମୟରେ ସଙ୍ଗୀତସାଧନା କରୁଥିବାରୁ ସେଥିରେ ସେ ଉନ୍ନତି କରେ । ନିଶାକୁ ସକାଳୁ ଡାକିଲେ ସେ ଉଠେ ନାହିଁ । ଉଷା ଅନେକଥର ଡାକେ । ନିଶା ଶୁଣି ନ ଶୁଣିଲା ପରି ହୁଏ । ନଚେତ୍ ଭିଡ଼ିମୋଡ଼ି ହୋଇ କଡ଼ ଲେଉଟାଇ ଶୁଏ । କେବେକେବେ ବିରକ୍ତ ହୋଇ ଉଠିପାରିବ ନାହିଁ ବୋଲି କହେ । ଉଷା ବାଧ୍ୟ ହୋଇ ଏକୁଟିଆ ସଙ୍ଗୀତସାଧନା କରିବାକୁ ଚାଲିଯାଏ ।

ଦିନେ ମୋହନ ବଳବନ୍ତରାୟ ଦୁଇ ଝିଅଙ୍କୁ ପାଖକୁ ଡାକିଲେ । ଉଭୟଙ୍କୁ ଶିଖିଥିବା ଗୀତରୁ ଗୋଟିଏ ଗୋଟିଏ ବୋଲି ଶୁଣାଇବାକୁ କହିଲେ । ଉଷା ସୁନ୍ଦର



Digitized by srujanika@gmail.com



ଭାବରେ ଗୀତଗାଇ ଶୁଣାଇ ଦେଲା । ନିଶା ଯେଉଁ ଗୀତଟି ଗାଇଲା ତାହା ବେସୁରା ହେଲା । ତା' ଉପରେ ବାପା ବିରକ୍ତି ହେଲେ । ସଙ୍ଗୀତ ସାଧନା ପ୍ରତି ଧ୍ୟାନ ଦେବାକୁ କହିଲେ । ଠିକ୍ ଭାବରେ ସଙ୍ଗୀତ ସାଧନା ନ କଲେ ଗୁରୁଜୀ ଆଉ ଶିଖାଇବେ ନାହିଁ ବୋଲି ସତର୍କ କରିଦେଲେ । ନିଶା ବାପାଙ୍କ ମୁହଁରେ କିଛି କହିଲା ନାହିଁ । ତାଙ୍କ କଥାକୁ ଏ କାନରେ ପୂରାଇ ସେ କାନରେ ବାହାର କରିଦେଲା ।

ଦ୍ୱିତୀୟ ମାସରେ ଗୁରୁଜୀ ଉଷା ଓ ନିଶାଙ୍କର ସଙ୍ଗୀତବିଦ୍ୟାର ପରୀକ୍ଷା ନେଲେ । ସେଥର ମଧ୍ୟ ଉଷା ସୁନ୍ଦର ଭାବରେ ଗାଇ ଶୁଣାଇ ଦେଲା । କିନ୍ତୁ ନିଶାକୁ କିଛି ଆସିଲା ନାହିଁ । ଗୁରୁଜୀ ବିରକ୍ତ ହେଲେ । ତୃତୀୟ ମାସରେ ସେଇ ଏକା ଅବସ୍ଥା । ଶେଷରେ ଚତୁର୍ଥ ମାସର ପରୀକ୍ଷା ଉପସ୍ଥିତ ହେଲା । ନିଶାର ସଙ୍ଗୀତରେ କିଛି ହେଲେ ଉନ୍ନତି ହୋଇ ନଥିଲା । ଗୁରୁଜୀ ମୋହନ ବଳବନ୍ତ ରାୟଙ୍କୁ ପରିଷ୍କାର ଭାବରେ ଜଣାଇ ଦେଲେ ଯେ ସେ ନିଶାକୁ ଆଉ ସଙ୍ଗୀତ ଶିକ୍ଷା ଦେବେନାହିଁ । ତାଙ୍କ ଶିକ୍ଷାର ପ୍ରଭାବ ନିଶା ଉପରେ କିଛିହେଲେ ପଡ଼ିଲା ନାହିଁ । ତେଣୁ ନିଶା ସଙ୍ଗୀତ ପ୍ରତି ଆଗ୍ରହ ପ୍ରକାଶ କଲାନାହିଁ । ଶେଷକୁ କଥା ହେଲା ଯେ



Digitized by srujanika@gmail.com

ଉଷାକୁ ଏକୁଟିଆ ସଙ୍ଗୀତଶିକ୍ଷା ଦିଆଯିବ । ମୋହନ ବଳବନ୍ତ ରାୟ ଗୁରୁଜୀଙ୍କୁ ବାଧ୍ୟ କରିପାରିଲେ ନାହିଁ ।

ଏଥର ଉଷା ଏକୁଟିଆ ସଙ୍ଗୀତ ଶିକ୍ଷା କଲା । ଉଷା ସଙ୍ଗୀତ ଶିଖିଲା ବେଳେ ନିଶା ମନ ଦୁଃଖରେ ଦୂରେଇ ରହି ଶୁଣିଲା । ତା'ର ମନରେ ଅନୁତାପ ସୃଷ୍ଟିହେଲା । କେହି ନ କହିବା ସତ୍ତ୍ୱେ ସେ ଉଷା ଠାରୁ ଶୁଣି ଶୁଣି ଶିଖିଲା । ଉଷା ନିଜ ଭଉଣୀର ଆଗ୍ରହ ଦେଖି ମହାଆନନ୍ଦରେ ଯାହା ଶିଖିଥିଲା ତାହା ଶିଖାଇବାରେ ଲାଗିଗଲା । ସକାଳୁ କେହି ନ ଡାକିଲେ ମଧ୍ୟ ନିଶା ଆପେ ଉଠି ସଙ୍ଗୀତ ସାଧନା କଲା । ଆଶ୍ଚର୍ଯ୍ୟର କଥା ଉଷା ଯାହାଯାହା ଶିଖିଥିଲା ଅଳ୍ପଦିନ ଭିତରେ ସେ ଆୟତ୍ତ କରିପାରିଲା । ଦିନେ ସେ ବାପାଙ୍କୁ କହିଲା ଗୁରୁଜୀଙ୍କୁ ଅନୁରୋଧ କରିବା ପାଇଁ ତା'ର ସଙ୍ଗୀତ ଶୁଣିବାକୁ । ମୋହନ ବଳବନ୍ତରାୟ ଝିଅର କଥାରକ୍ଷା କରି ଗୁରୁଜୀଙ୍କୁ ନିଶାର ସଙ୍ଗୀତ ଶୁଣିବାକୁ ଦିନେ ଅନୁରୋଧ କଲେ । ଗୁରୁଜୀ ନିଶାର ସଙ୍ଗୀତ ଶୁଣି ମୁଗ୍ଧ ହୋଇଗଲେ । ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ପୁନର୍ବାର ତାକୁ ଶିଖାଇବାକୁ ରାଜି ହେଲେ । ନିଶା ତା'ର ସାଧନାର ପରିଣାମ ଜାଣି ପାରିଲା ।





Digitized by srujanika@gmail.com

## ପ୍ରକୃତ ଆନନ୍ଦ

ଜଣେ ପ୍ରଜାବତ୍ସଳ ରାଜା ଥାଆନ୍ତି । ସେ ପ୍ରଜାମାନଙ୍କର ସୁଖ ସୁବିଧା ପ୍ରତି ଦୃଷ୍ଟି ରଖି ରାଜ୍ୟରେ ଜଳାଶୟମାନ ନିର୍ମାଣ କରିଥାନ୍ତି । ବହୁ ପରିମାଣରେ ବୃକ୍ଷ ରୋପଣ କରାଇ ଥାଆନ୍ତି । ସେଥିପାଇଁ ରାଜ୍ୟ ସବୁଜ ସୁନ୍ଦର ଦିଶୁ ଥାଏ । ସୁସ୍ଥ ପରିବେଶ ସୃଷ୍ଟି ହୋଇଥାଏ । ତତ୍‌ସହିତ ଚିକିତ୍ସାଳୟ, ପାନ୍ଥଶାଳା, ପାଠଶାଳା ଇତ୍ୟାଦି କରାଇ ଥାଆନ୍ତି । ମଝିରେ ମଝିରେ ଛଦ୍ମବେଶରେ ରାଜ୍ୟର ଗୋଟିଏ ଗୋଟିଏ ଅଞ୍ଚଳ ପରିଭ୍ରମଣରେ ଯାଆନ୍ତି । ଯାହାଦ୍ୱାରା କି ସେ ଜାଣିପାରିବେ ପ୍ରଜାମାନଙ୍କର ସୁବିଧା ଅସୁବିଧା । ଯେତେବେଳେ ଯେଉଁ ସ୍ଥାନରେ ପ୍ରଜାମାନଙ୍କ ସହିତ ତାଙ୍କର ଭେଟ ହୁଏ ସେ ସୁବିଧା ଅସୁବିଧା କଥା ସେମାନଙ୍କୁ ପଚାରି ବୁଝନ୍ତି । ପ୍ରଜାମାନେ ତାଙ୍କୁ ସାଧାରଣ ନାଗରିକ ଭାବି ବିନା ସଙ୍କୋଚରେ ନିଜର ସମସ୍ୟା କଥା କୁହନ୍ତି । ରାଜା ଅଳ୍ପଦିନ ଭିତରେ ସେହି ସମସ୍ୟାକୁ ଦୂର କରିବା ନିମନ୍ତେ କାର୍ଯ୍ୟ କରନ୍ତି । କୌଣସି ଲୋକର ଅର୍ଥାଭାବ ରହିଥିଲେ ରାଜକର୍ମଚାରୀଙ୍କ ଦ୍ୱାରା ପରୋକ୍ଷରେ ତାକୁ ସାହାଯ୍ୟ କରନ୍ତି ।

ଦିନକର କଥା । ରାଜା ଛଦ୍ମବେଶରେ ଯାଉଯାଉ କ୍ଷୁଦ୍ର, କୁଟୀରଟିଏ ନିକଟରେ ପହଞ୍ଚିଲେ । ସେହି କୁଟୀରଟି ଭିତରକୁ ଯିବାର ଇଚ୍ଛା ସେ କାହିଁକି ଦମନ କରିପାରିଲେ ନାହିଁ । ସେ କୁଟୀରର ଦ୍ୱାରରେ କରାଘାତ କଲେ । ଜଣେ



Digitized by srujanika@gmail.com

ବ୍ୟକ୍ତି ଆସି କବାଟ ଖୋଲିଲେ ଏବଂ ଆଗନ୍ତୁକ (ଛଦ୍ମବେଶୀ ରାଜା)ଙ୍କୁ ସ୍ୱାଗତ କରି ଭିତରକୁ ଡାକିଲେ । ସେହି ଗୃହଟି ଜଣେ କୃଷକଙ୍କର ଥିଲା । ରାଜା ଦେଖିଲେ ଘର ଭିତରଟିରେ ଖୁବ୍ କମ୍ ଆସବାବପତ୍ର ରହିଛି । ସେ ଭାବିଲେ, 'ଏତେ କମ୍ ଜିନିଷରେ ଏହି ବ୍ୟକ୍ତିଟି କିପରି ଚଳୁଥିବ ? ତାଙ୍କୁ ତ ବହୁତ କଷ୍ଟ ଲାଗୁଥିବ । ବ୍ୟକ୍ତିଜଣକ ନିଶ୍ଚୟ ଦରିଦ୍ର ଏଥିରେ ତିଳେମାତ୍ର ସନ୍ଦେହ ନଥିଲା । ଅଥଚ ରାଜା ସେ ବ୍ୟକ୍ତି ସହିତ କଥାବାର୍ତ୍ତା କରିବା ଭିତରେ ସେ ନିଜର ଦାରିଦ୍ର୍ୟ ସମ୍ବନ୍ଧରେ କିଛି ହେଲେ କହିଲା ନାହିଁ । ରାଜା ବିଭିନ୍ନ କଥା ତା' ସହିତ ଆଲୋଚନା କରୁଥାନ୍ତି । ସେ ତାଙ୍କୁ ଆଲୋଚନା କରିବାକୁ ଭଲ ଲାଗୁଥାଏ ଏଇଥିପାଇଁ ସେ ବ୍ୟକ୍ତିଙ୍କର କଥାବାର୍ତ୍ତା ସରଳ ଥାଏ । କୃଷିକାର୍ଯ୍ୟରେ ତାଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼େ । ଗୃହରେ ପତ୍ନୀ ଏବଂ ପିଲାଙ୍କ ଦାୟିତ୍ୱ ବୁଝିବାକୁ ପଡ଼େ । ପତ୍ନୀ ଓ ପୁତ୍ର ତାଙ୍କୁ ଆନନ୍ଦ ମନରେ କାର୍ଯ୍ୟରେ ସହଯୋଗ କରନ୍ତି । ଯେତେବେଳେ ଘରେ ଯାହା ଥାଏ ଖୁସିରେ ଖାଇ ଦିଅନ୍ତି । କୌଣି ଅତିଥି ଆସିଲେ ସେଇଆକୁ ବାଣ୍ଟିକରି ଖାଆନ୍ତି । କୃଷକ ଜଣକ ପରିବାରର ମୁଖ୍ୟ । ତାଙ୍କର ପତ୍ନୀ ଓ ପୁତ୍ର ତାଙ୍କୁ ସମ୍ମାନ କରନ୍ତି । ତାଙ୍କର ନିଷ୍ପତ୍ତିକୁ ଆନନ୍ଦରେ ଗ୍ରହଣ କରନ୍ତି । ସେ ମଧ୍ୟ ପତ୍ନୀଙ୍କର ପରାମର୍ଶ ଗ୍ରହଣ କରନ୍ତି । ପତ୍ନୀ ଓ ପୁତ୍ର ସହିତ ଆଲୋଚନା କରି କୌଣସି କାର୍ଯ୍ୟ କରନ୍ତି । ସେମାନଙ୍କୁ ସ୍ନେହଶ୍ରଦ୍ଧା କରନ୍ତି । ଏହିପରି ପରସ୍ପର ସହିତ ସ୍ନେହଶ୍ରଦ୍ଧାର ନିବିଡ଼ ସଂପର୍କ ରହିଥିବାରୁ କାହାର କାହା ପ୍ରତି ଅଭିଯୋଗ ନଥାଏ ।

ଛଦ୍ମବେଶୀ ରାଜା କୃଷକଙ୍କୁ କଥାଛଳରେ କହିଲେ ଯେ ରାଜ୍ୟର ରାଜାଙ୍କୁ ଅନୁରୋଧ କରି ସେ ତାଙ୍କର ଗୃହର ଉନ୍ନତି ନିମନ୍ତେ ଆବଶ୍ୟକ ଅର୍ଥର ବ୍ୟବସ୍ଥା କରାଇ ଦେଇପାରିବେ । କୃଷକ ଜଣକ ରାଜାଙ୍କର ଏହି କଥାଟିକୁ ବିନମ୍ରତାର ସହ ପ୍ରତ୍ୟାଖ୍ୟାନ କରିଦେଲେ । ସେ କହିଲେ ଯେ ତାଙ୍କର ଅର୍ଥର ଆବଶ୍ୟକତା ନାହିଁ । ରାଜା ବାରମ୍ବାର ବିଶେଷ ଆଗ୍ରହ ପ୍ରକାଶ କରିବାରୁ ସେ ତାଙ୍କର ପତ୍ନୀଙ୍କୁ ଏକଥା ପଚାରିବାକୁ କହିଲେ । ଆଶ୍ଚର୍ଯ୍ୟର କଥା ଯେ ତାଙ୍କର ପତ୍ନୀ ଏହି ଅଯାଚିତ



Digitized by srujanika@gmail.com



ସାହାଯ୍ୟର ପରାମର୍ଶକୁ ପ୍ରତ୍ୟାଖ୍ୟାନ କଲେ ଏବଂ ଶେଷରେ ପୁତ୍ର ମଧ୍ୟ ଏଥିରେ ରାଜି ହେଲା ନାହିଁ । ରାଜା ଆଉ ବାଧ୍ୟ କଲେନାହିଁ । କୃଷକଙ୍କର ନିଜର କର୍ମ ଉପରେ ବିଶ୍ୱାସ ଥିଲା । ତାଙ୍କ ପତ୍ନୀ ଓ ପୁତ୍ର ସେହି ମାର୍ଗରେ ପରିଚାଳିତ ହୋଇ ଚାଲିଥିଲେ । ସେମାନଙ୍କର ପରର ଧନ ପ୍ରତି ଲୋଭ, ମୋହ ନଥିଲା । ବିନା କର୍ମରେ କେଉଁଠୁ କିଛି ମିଳିଗଲେ ତାକୁ ଆନନ୍ଦରେ ଗ୍ରହଣ କରିନେବା ପରି ମନୋଭାବ ରଖି ନଥିଲେ ।

ରାଜା ଅନୁଭବ କଲେ ଯେ ଖାଲି ଆରାମପ୍ରଦ ଜୀବନ ଅତିବାହିତ କଲେ ହେବନାହିଁ । ପରିବାରରେ ପରସ୍ପରର ସ୍ନେହଶ୍ରଦ୍ଧା, ପରିଶ୍ରମ ପତି ଆଗ୍ରହ ପରି ଗୁଣାବଳୀ ହିଁ ପ୍ରକୃତ ଆନନ୍ଦ ଦେଇଥାଏ । ଆର୍ଥିକ ସ୍ୱଚ୍ଛଳତା ନ ଥାଇ ମଧ୍ୟ ଏହି ପରିବାରଟିରେ ଶାନ୍ତି ବିରାଜମାନ କରିଛି । ପିତା, ମାତା, ପୁତ୍ର ଆନନ୍ଦରେ ଦିନ ଅତିବାହିତ କରୁଛନ୍ତି । ଅତିଥିଙ୍କୁ ନିର୍ମଳ ହୃଦୟରେ ଆଦର ସତ୍କାର କରୁଅଛନ୍ତି । ପରମ ସନ୍ତୋଷରେ ସେହି ପରିବାରଠାରୁ ବିଦାୟ ଘେନି ଛଦ୍ମବେଶୀ ରାଜା ନିଜ ରାଜନବରକୁ ପ୍ରତ୍ୟାବର୍ତ୍ତନ କଲେ ।





Digitized by srujanika@gmail.com

## ସତ୍ୟବାଦୀତାର ଫଳ

କୈଳାସ ଶର୍ମା ଜଣେ ଧନବାନ୍ ବ୍ୟକ୍ତି ଥିଲେ । ତା' ସହିତ ଥିଲେ ଅତିଥିପରାୟଣ । ତାଙ୍କ ଗୃହକୁ କୌଣସି ଅତିଥି ଆସିଲେ ସେ ପ୍ରସନ୍ନ ଚିତ୍ତରେ ତାଙ୍କର ଆଦର ସତ୍କାର କରୁଥିଲେ । ତାଙ୍କ ବିରାଟ ଭବନରେ ଗୋଟିଏ କକ୍ଷ ସେ ଅତିଥିମାନଙ୍କ ଉଦ୍ଦେଶ୍ୟରେ ହିଁ ରଖିଥିଲେ । ସବୁ କକ୍ଷରେ ରହିବା ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା ଥିଲା । ତେଣୁ ସେମାନଙ୍କର କୌଣସି ଅସୁବିଧା ହେଉ ନଥିଲା । ଶର୍ମା ମହାଶୟ ଖାଦ୍ୟପେୟର ମଧ୍ୟ ସୁବନ୍ଦୋବସ୍ତ କରୁଥିଲେ । ଯିଏ ତାଙ୍କ ଗୃହରେ ଅତିଥି ହେଉଥିଲେ ସନ୍ତୁଷ୍ଟ ହୋଇ ସେମାନେ ବିଦାୟ ଘେନୁଥିଲେ ।

ଏକଦା ଶର୍ମା ମହାଶୟଙ୍କର ପତ୍ନୀ ବେମାର ପଡ଼ିଲେ । ଅନେକ ଡାକ୍ତର କବିରାଜଙ୍କୁ ଦେଖାଇଲା ପରେ କୌଣସି ଫଳ ହେଲାନାହିଁ । ତାଙ୍କର ପତ୍ନୀ ଗୃହକାର୍ଯ୍ୟ କରିପାରିଲେ ନାହିଁ । ବିଛଣାରେ ପଡ଼ି ରହିଲେ । ଦିନୁ ଦିନ ଦୁର୍ବଳ ହୋଇଗଲେ । ତାଙ୍କର ବଞ୍ଚିବାର ଆଶା ଲୋପ ପାଇବାରେ ଲାଗିଲା । କୈଳାସ ଶର୍ମାଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ନିରୁପାୟ ହୋଇ ଜଣେ ଜ୍ୟୋତିଷଙ୍କ ନିକଟକୁ ଗଲେ । ଜ୍ୟୋତିଷ ଜଣକ ତାଙ୍କର ଗଣନା, ଭବିଷ୍ୟତ ବିଷୟରେ ସଠିକ୍ ପରାମର୍ଶ ଦେବାପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେ କୈଳାସ ଶର୍ମାଙ୍କୁ କହିଲେ ଯେ ତିନିଦିନ ଭିତରେ ତାଙ୍କ ଗୃହକୁ ଏପରି ଜଣେ ଅତିଥି ଆସିବେ ଯେ କି ଖୁବ୍ ସତ୍ୟବାଦୀ । ନିଜର ସତ୍ୟବାଦିତା ନିମନ୍ତେ ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ।



Digitized by srujanika@gmail.com

କୈଳାସ ଶର୍ମା ସେହି ଅତିଥିଙ୍କର ମନ ପ୍ରାଣ ଦେଇ ସେବା କଲେ ତା'ର ପରିଣାମସ୍ୱରୂପ ତାଙ୍କର ପତ୍ନୀ ନୂଆ ଜୀବନ ଲାଭ କରିବେ ।

କୈଳାସ ଶର୍ମା ଅତି ଉତ୍ସୁକ ଭାବରେ ଅତିଥିଙ୍କର ଅପେକ୍ଷାରେ ରହିଲେ । ଗୋଟିଏ ଦିନ ବିତିଗଲା । ଦୁଇଦିନ ବିତିଗଲା । ଶର୍ମା ମହାଶୟଙ୍କର ମନ ଦୁଃଖରେ ଭାଙ୍ଗି ପଡୁଥାଏ । ସତରେ କ'ଣ ତାଙ୍କ ଗୃହକୁ ତିନିଦିନ ଭିତରେ କେହି ଅତିଥି ଆସିବେ ନାହିଁ । ଆଜି ପର୍ଯ୍ୟନ୍ତ ସେ ଅତିଥିଙ୍କର କେତେ ଯତ୍ନ, ଆଦର ଅଭ୍ୟର୍ଥନା କରିଛନ୍ତି । ଅଥଚ ପତ୍ନୀ ମୃତ୍ୟୁ ମୁଖରେ ପଡ଼ିଥିବା ସମୟରେ ଈଶ୍ୱର ତାଙ୍କ ନିକଟକୁ କୌଣସି ଅତିଥି ପଠାଉ ନାହାନ୍ତି । ତୃତୀୟ ଦିନ ସକାଳଓଳାଟି ଗଲା । କୈଳାସ ଶର୍ମା ନିରାଶ ହୋଇପଡ଼ିଲେ । ସେହିଦିନ ରାତିଓଳା ଗୋଟିଏ ଚୋର ତାଙ୍କ ଗୃହରେ ଚୋରି କରିବ ଭାବି ଆସୁଥାଏ । ଅଧିକ ରାତିରେ ସମସ୍ତେ ଶୋଇ ଯିବେଣି ଚିନ୍ତାକରି ସେ ଗୃହରେ ପ୍ରବେଶ କରିବାକୁ ବାହାରିଲା । କୈଳାସ ଶର୍ମାଙ୍କୁ ନିଦ ନଥାଏ । ପତ୍ନୀଙ୍କର ମୃତ୍ୟୁ ସୁନିଶ୍ଚିତ ଭାବି ସେ ଚିନ୍ତାରେ, ଦୁଃଖରେ ଛଟପଟ ହେଉଥାନ୍ତି । ଖଡ଼୍ ଶବ୍ଦ ଶୁଣି ସେ ଦଉଡ଼ି ଆସି ଦରଜା ମେଲା କରିଦେଲେ । ଚୋରଟି ଝରକାରେ ଚଢ଼ିଥିଲା । ସେଠାରୁ ଓହ୍ଲାଇ ଦଉଡ଼ି ପଳାଇ ଯିବ, ଏତିକି ସମୟ ସେ ପାଇଲା ନାହିଁ । ଶର୍ମା ମହାଶୟ ତା'ର ହାତ ଦୁଇଟି ଧରିପକାଇ ଘର ଭିତରକୁ ଟାଣି ନେଲେ । ନମ୍ରତାର ସହିତ ତା'ର ପାଦତଳେ ପଡ଼ିଗଲେ । ଚୋରଟି ଆଶ୍ଚର୍ଯ୍ୟ ହୋଇଗଲା । ସେ କ'ଣ କରିବ କିଛି ବୁଦ୍ଧି ବାଟ ଦେଖାଗଲା ନାହିଁ । କୈଳାସ ଶର୍ମା ଆଦରରେ ନେଇ ତା'ର ପାଦ ଦୁଇଟି ଧୋଇ ଦେଲେ । ଅତିଥିଗୃହରେ ତାକୁ ବସାଇଲେ । ଖାଇବା ପିଇବା କଥା ପଚାରିଲେ । ଚୋରଟିକୁ ଭାରି ଭୋକ ହେଉଥିଲା । ସେ ଉତ୍ତମ ରୂପେ ଭୋଜନ କରି ସନ୍ତୁଷ୍ଟ ହେଲା । ତା' ପରେ ଶର୍ମାମହାଶୟ ଚୋରକୁ ତାଙ୍କ ପତ୍ନୀଙ୍କ ବେମାର ବିଷୟରେ କହିଲେ । ଏହି ଅତିଥି ଆଶୀର୍ବାଦ କଲେ ତାଙ୍କର ପତ୍ନୀ ଭଲ ହୋଇଯିବେ ବୋଲି ଜଣାଇଲେ । ଚୋରଟି କୈଳାସ ଶର୍ମାଙ୍କର ଆତିଥ୍ୟରେ ମୁଗ୍ଧ ହୋଇ ମନେମନେ ଅନୁତାପ କରୁଥିଲା । ଭାବୁଥିଲା ପିଲାଦିନୁ ବଡ଼ହେବା ପର୍ଯ୍ୟନ୍ତ ସେ ଭାରି ସତ୍ୟବାଦୀ ଥିବାରୁ କିପରି ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ହୋଇପାରିଥିଲା । ଏହି ବର୍ଷେ ହେବ କାହିଁକି ଏପରି



Digitized by srujanika@gmail.com

କୁକର୍ମରେ ନିଜକୁ ଜଡ଼ିତ କଲା ଓ ନିଜର ପୁଣ୍ୟଫଳକୁ ନିଷ୍ଟ କରିଦେଲା । ପରିଶ୍ରମ କରି ଚଳିଥିଲେ ଆଜି ସେହିପରି ସତ୍ୟବାଦୀ ହେବାର ଗୌରବ ଲାଭକରି ରହିଥାନ୍ତା । ହେଲେ ଏବେ ସେସବୁର କିଛି ମୂଲ୍ୟ ନାହିଁ । ଶର୍ମା ମହାଶୟଙ୍କୁ ସତ କଥା ଜଣାଇ ଦେବା ହିଁ ଉଚିତ ହେବ ।



ଚୋରଟି କୈଳାସ ଶର୍ମାଙ୍କୁ ସତ୍ୟ ଘଟଣା ଜଣାଇ ଦେଲା । ବାସ୍ତବରେ ସେ ଆତିଥ୍ୟ ପାଇଁ ନୁହେଁ ଚୋରି କରିବାକୁ ଆସିଥିଲା । ସେ ତାକୁ ଦୟାକରି କ୍ଷମା କରିଦିଅନ୍ତୁ ଏବଂ ବିଦାୟ ଦିଅନ୍ତୁ । ଶର୍ମା ମହାଶୟ ଏଥିରେ ବିଶ୍ୱାସ କଲେନାହିଁ । ଚୋରଟି ବାରମ୍ବାର ବୁଝାଇବାକୁ ଚେଷ୍ଟାକଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହା ଭିତରେ କୈଳାସ ଶର୍ମାଙ୍କ ପତ୍ନୀ ଆଖି ଖୋଲି ଚାହିଁଲେ ଓ ସ୍ୱାମୀଙ୍କୁ ପାଖକୁ ଡାକିଲେ । ଶର୍ମା ମହାଶୟଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ପତ୍ନୀଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ପାଣି ପିଇବାକୁ ଦେଲେ । ତାଙ୍କର ପତ୍ନୀ ଉଠି ବସିଲେ । ଶର୍ମା ମହାଶୟ ଅତିଥିଙ୍କ ପାଦତଳେ ପଡ଼ିଗଲେ ଓ ସ୍ୱଗୃହରେ ଆଉ କିଛିଦିନ ରହିବା ନିମନ୍ତେ ଆକୁଳ ଅନୁରୋଧ କଲେ । ଚୋରଟି ତାଙ୍କର ଅନୁରୋଧ ଏଡ଼ି ନ ପାରି ଦୁଇଦିନ ରହି ସେଠାରୁ ବିଦାୟ ନେଲା । ସେହିଦିନୁ ଚୋର ପ୍ରକୃତି ତ୍ୟାଗ କଲା ଓ ପୂର୍ବପରି ସତ୍ୟବାଦୀ ହେଲା ।





Digitized by srujanika@gmail.com

# ବିଶ୍ୱାସ

ଆନନ୍ଦ ଥିଲା ଧନୀ ପିତାଙ୍କର ଏକମାତ୍ର ସନ୍ତାନ । ତେଣୁ ବାଲ୍ୟକାଳରୁ ସଂସାରର ଯେତେ ସୁଖସୁବିଧା ତାକୁ ପ୍ରାପ୍ତ ହୋଇ ଯାଉଥିଲା । ଧନସମ୍ପଦ, ମାନସମ୍ମାନ କେଉଁଟି ହେଲେ ଊଣା ନଥିଲା । ହେଲେ ଏସବୁ ପ୍ରତି ତା'ର ଆଗ୍ରହ ନଥିଲା କିମ୍ବା ମୋହ ନଥିଲା । ତା'ର ପିତା ଭାବୁଥିଲେ ଛୋଟ ଥିବାରୁ ଧନସମ୍ପତ୍ତିର ମୂଲ୍ୟ ପୁତ୍ର ବୁଝିପାରୁ ନାହିଁ ସିନା, ବଡ଼ ହୋଇଗଲେ ଏହାର ମୂଲ୍ୟ ବୁଝିପାରିବ ଏବଂ ଏସବୁ ପ୍ରତି ଆପେଆପେ ତା'ର ଆଗ୍ରହ ସୃଷ୍ଟିହେବ । ହେଲେ ପିତାଙ୍କର ଭାବନା ଅନୁସାରେ ଆନନ୍ଦ ହୋଇପାରିଲା ନାହିଁ । ଯହୁଁ ଯହୁଁ ବଡ଼ ହେଲା ସଂସାରର ବିଷୟ ପ୍ରତି ସେ ତହୁଁତହୁଁ ଉଦାସ ହେବାରେ ଲାଗିଲା । ତା'ର ଏପରି ମନୋଭାବ




Digitized by srujanika@gmail.com

ଦେଖି ପିତା ବଡ଼ ଚିନ୍ତିତ ହେଲେ । ଭାବିଲେ ଯଦି ତା'ର ବିବାହ କରି ଦିଆଯାଏ ତେବେ ହୁଏତ ତା' ମନୋଭାବ ବଦଳି ଯାଇପାରେ । ଏହିପ୍ରକାର ଚିନ୍ତାକରି ଆନନ୍ଦର ବିବାହ ନିମନ୍ତେ ତା'ର ପିତାମାତା ଉପଯୁକ୍ତ ପାତ୍ରୀ ଖୋଜିବାରେ ଲାଗି ପଡ଼ିଲେ ।

ଆନନ୍ଦ ଯେମିତି ଜାଣିଲା ଯେ ତା'ର ବିବାହ ପାଇଁ ପାତ୍ରୀ ଖୋଜା ଚାଲିଛି ସେ କାହାକୁ କିଛି ନ କହି ଦିନେ ଚୁପ୍‌ଚାପ୍ ଘର ଛାଡ଼ି ଚାଲିଗଲା । ପିତାମାତା ଗୃହରେ ପୁତ୍ରକୁ ନ ପାଇ ଅନେକ ଖୋଜିଲେ । ବିଭିନ୍ନ ଆଡ଼େ ଖବର ଦେଲେ । କିଛି ଫଳ ହେଲା ନାହିଁ । ଏକମାତ୍ର ପୁତ୍ରର ଅନୁପସ୍ଥିତିରେ ସେମାନେ ବିକଳ ହୋଇ ରୋଦନ କରିବାରେ ଲାଗିଲେ । ବନ୍ଧୁବାନ୍ଧବ, ପଡ଼ୋଶୀ, ଚିହ୍ନାଜଣା ଇତ୍ୟାଦି ସେମାନଙ୍କୁ ସାନ୍ତ୍ୱନା ଦେଲେ, ବୁଝାଇଲେ । ଶେଷରେ ନିଜ କପାଳ ଆଦରି ସେମାନେ ଦିନ କଟାଇଲେ ।

ଘରୁ ବାହାରି ଯାଇ ଆନନ୍ଦ ବିଭିନ୍ନ ସ୍ଥାନ ଭ୍ରମଣ କଲା । ନିଜର ଆବଶ୍ୟକ ଖାଦ୍ୟ ଭିକ୍ଷାକରି ଅତି ସାମାନ୍ୟ ଭାବରେ ଗ୍ରହଣ କରୁଥିଲା । ଦିନେ ଭ୍ରମଣରେ ଯାଉଯାଉ ଦେଖିଲା ଗୋଟିଏ ଅଞ୍ଚଳରେ ଅନେକ ଲୋକ ଏକାଠି ହୋଇ ବସିଛନ୍ତି । ଜଣେ ସାଧୁ ପ୍ରବଚନ କରୁଛନ୍ତି । ସେ ସେଠାରେ ଅଟକି ଗଲା । ସାଧୁ ମହାଶୟଙ୍କ ପ୍ରବଚନ ଶୁଣିବାରେ ତା'ର ଇଚ୍ଛା ହେଲା । ସାଧୁ କହୁଥିଲେ, 'ସାରା ସଂସାର ବିଶ୍ୱାସ ବଳରେ ଚାଲିଛି । ଯଦି କାହାର କାହା ଉପରେ ବିଶ୍ୱାସ ନ ରହିବ ତେବେ କେହି କାହା ଉପରେ ଭରସା କରିପାରିବେ ନାହିଁ । ପରିବାରରେ କେହି ନିଜର ଧର୍ମ, କର୍ତ୍ତବ୍ୟପାଳନ କରିବେ ନାହିଁ । ସନ୍ତାନ ପିତାମାତାଙ୍କୁ ବିଶ୍ୱାସ କରିବେ ନାହିଁ । ପିତାମାତା ସନ୍ତାନ ଉପରେ ଭରସା ରଖିପାରିବେ ନାହିଁ । ପରିବାର ଧ୍ୱଂସ ହୋଇଗଲେ ସଂସାରର ମଧ୍ୟ ଅବସ୍ଥା ସେହି ଅନୁସାରେ ବଦଳି ଯିବ । ସବୁଠାରେ ଅଶାନ୍ତି ବିଶୃଙ୍ଖଳା ଚରମସୀମାରେ ପହଞ୍ଚିବ ।

ସାଧୁଙ୍କର ପ୍ରବଚନ ଶେଷ ହୋଇଯିବା ପରେ ଆନନ୍ଦ ତାଙ୍କ ସହ ସାକ୍ଷାତ କଲା । ସେତେବେଳକୁ ଅନ୍ୟ ଶ୍ରୋତାମାନେ ବିଦାୟ ନେଇ ସାରିଥିଲେ । ସେହି



Digitized by srujanika@gmail.com



ନିକଟରେ ସାଧୁଙ୍କର ଆଶ୍ରମ ଥିଲା । ସେ ଆନନ୍ଦକୁ ବସିବାକୁ ନିର୍ଦ୍ଦେଶ ଦେଲେ । ପ୍ରସଙ୍ଗକ୍ରମେ ଜାଣିଲେ ଯେ ଆନନ୍ଦ ଗୃହତ୍ୟାଗ କରି ଚାଲି ଆସିଛି । ସେଥିପାଇଁ ତାକୁ ବୁଝାଇଲେ । ତାଙ୍କ ପ୍ରବଚନରୁ ତ ଆନନ୍ଦ ଅନେକ କଥା ଜାଣି ସାରିଥିଲା । ଆଶ୍ରମର ବାତାବରଣ ତାକୁ ଖୁବ୍ ଶାନ୍ତ ସୁନ୍ଦର ଲାଗୁଥିଲା । ସେଠାରେ ସେ କିଛିକାଳ ଅବସ୍ଥାନ କଲା । ସାଧୁଙ୍କର ସେବା କଲା । ଆଶ୍ରମର ଅନେକ କାମ କରି ପକାଇଲା । ଦିନେ ସାଧୁ ତାକୁ ନିକଟକୁ ଡାକିଲେ ଓ ପିତାମାତାଙ୍କ କଥା ତା'ର ମନେପଡୁଛି କି ନାହିଁ ପଚାରିଲେ । ଆନନ୍ଦ କିଛି କହିପାରିଲା ନାହିଁ । ତା'ର ଆଖି ଛଳଛଳ ହୋଇଗଲା । ସାଧୁ ତା'ର ମନୋଭାବ ବୁଝିପାରିଲେ । ସେ ତା'ର କାର୍ଯ୍ୟରେ ପ୍ରସନ୍ନ ଥିଲେ । ପିତାମାତାଙ୍କ ବିଶ୍ୱାସରେ ସେ ଯେପରି ପୁନର୍ବାର ଆଞ୍ଚ ନ ଆଣେ ଆନନ୍ଦକୁ ସେହି ପରାମର୍ଶ ଦେଇ ବିଦାୟ ଦେଲେ ।

ଆନନ୍ଦ ନିଜର ଗୃହରେ ଉପସ୍ଥିତ ହେଲା । ଏତେଦିନ ପରେ ପୁତ୍ରକୁ ଦେଖି ପିତାମାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ଆନନ୍ଦବିହୁନେ ଜୀର୍ଣ୍ଣଶୀର୍ଣ୍ଣ ହୋଇଯାଇଥିଲେ । ଆନନ୍ଦ ସେମାନଙ୍କର ଅବସ୍ଥା ଦେଖି ନିଜକୁ ସେଥିପାଇଁ ଦୋଷୀ ମନେ କରୁଥିଲା । ସେ ସେମାନଙ୍କ ପାଦ ତଳେ ପ୍ରଣାମ କରି


Digitized by srujanika@gmail.com

ଉଠିଲା ପରେ ସେମାନେ ତାକୁ ଆଲିଙ୍ଗନ କଲେ । ତାଙ୍କର ମୁଖ ଉଜ୍ଜ୍ୱଳ ହୋଇଉଠିଲା । ପୁତ୍ର ତାଙ୍କର ଫେରି ଆସିବ ଏ ବିଶ୍ୱାସ ସେମାନେ ହରାଇ ବସିଥିଲେ । ଆନନ୍ଦମୁଖରୁ ସେମାନେ ସାଧୁଙ୍କ ସମ୍ବନ୍ଧରେ ଶୁଣିଲେ । ସେଇ ମହାତ୍ମାଙ୍କ କୃପା ବଳରେ ଆଜି ତାଙ୍କର ପୁତ୍ର ତାଙ୍କ ନିକଟକୁ ଫେରି ଆସିଛି । ତାଙ୍କର ହଜିଲା ଧନ ତାଙ୍କୁ ମିଳି ଯାଇଛି ଜାଣି କୃତଜ୍ଞତାରେ ସାଧୁଙ୍କ ନିକଟରେ ସେମାନଙ୍କର ମୁଣ୍ଡ ନଇଁଗଲା । ପିତାମାତା ପୁତ୍ର ଏକତ୍ର ହୋଇ ଦିନେ ସାଧୁଙ୍କୁ ଦର୍ଶନ କରିବାକୁ ତାଙ୍କର ଆଶ୍ରମକୁ ଗଲେ । ସେଠାରେ ଦର୍ଶନ କରି ତାଙ୍କର ଆଶୀର୍ବାଦ ଗ୍ରହଣ କଲେ ଏବଂ ଗୃହକୁ ଫେରିଲେ । ସେହିଦିନ ଠାରୁ ଆନନ୍ଦ ନିଜ ପିତାମାତାଙ୍କର ତା' ଉପରେ ଥିବା ବିଶ୍ୱାସକୁ ରକ୍ଷା କରିବାକୁ ସର୍ବଦା ଚେଷ୍ଟାକଲା । ସେମାନେ ମଧ୍ୟ ଏତେଶୀଘ୍ର ତାକୁ ବିବାହ ବନ୍ଧନରେ ନ ପକାଇ ଆଉ କିଛିକାଳ ଅପେକ୍ଷା କରି ତା'ର ମତ ଅନୁସାରେ ବିବାହ କରିବେ ବୋଲି ସ୍ଥିରକଲେ । ସଂସାର କର୍ମକରି କିପରି ସତ୍ ଉପାୟରେ ଜୀବନ ଅତିବାହିତ କରିହେବ ଏସବୁ ଶିକ୍ଷା ଆନନ୍ଦ ସାଧୁଙ୍କ ଠାରୁ ପ୍ରାପ୍ତ ହୋଇଥିଲା । ତେଣୁ ପିତାମାତାଙ୍କ ପ୍ରତି, ସଂସାର ପ୍ରତି ଉପଯୁକ୍ତ କର୍ତ୍ତବ୍ୟ କରି ସେ ଜଣେ ଆଦର୍ଶ ବ୍ୟକ୍ତି ହେବାର ଗୌରବ ଅର୍ଜନ କଲା । ପିତାମାତାଙ୍କର ବିଶ୍ୱାସକୁ ରକ୍ଷାକଲା । ପିତାମାତା କିଛିବର୍ଷ ପରେ ଆନନ୍ଦର ମତ ନେଇ ଜଣେ ଉପଯୁକ୍ତ କନ୍ୟା ସହିତ ତା'ର ବିବାହ କରାଇ ଦେଲେ । ସମସ୍ତେ ଶାନ୍ତିରେ ଜୀବନ କଟାଇଲେ । ଈଶ୍ୱର ବିଶ୍ୱାସରେ ରହିଲେ ।





Digitized by srujanika@gmail.com

# ରାଜାଙ୍କ ଆଦେଶ

ବନ ମଧ୍ୟରେ ସୁନ୍ଦର ସରୋବରଟିଏ ଥାଏ । ତା'ର ଜଳ ଏତେ ସ୍ୱଚ୍ଛ ଯେ ସେଥିରେ ମୁହଁ ଦେଖିଲେ ପରିଷ୍କାର ଭାବରେ ଦେଖାଯାଏ । ଆଖପାଖରେ ଥିବା ବୃକ୍ଷମାନଙ୍କରେ ଅନେକ ପକ୍ଷୀ ବାସ କରୁଥାନ୍ତି । ସେମାନଙ୍କର କଳରବରେ ସେ ସ୍ଥାନଟି ମୁଖରିତ ହୋଇ ଉଠୁଥାଏ । ବହୁ ପ୍ରକାର ସ୍ୱରଧ୍ୱନି ଏକତ୍ର ହୋଇଯାଇ ଯେମିତି ନୂତନ ସ୍ୱର ସୃଷ୍ଟିହେବା ପରି ଲାଗୁଥାଏ । ମୟୂର, ଶୁଆ, ଶାରୀ, କୁମ୍ଭାଟୁଆ, କଜଳପାତି, କୋଇଲି ଇତ୍ୟାଦି କେତେପ୍ରକାରର ପକ୍ଷୀ ସେଠାରେ ଥାଆନ୍ତି । ସରୋବରରେ ଦୁଇଟି ରାଜହଂସ ସନ୍ତରଣ କରୁଥାନ୍ତି । ସେମାନଙ୍କର ଧଳା ଚକ୍‌ଚକ୍ ବର୍ଣ୍ଣ ଅତ୍ୟନ୍ତ ଆକର୍ଷଣୀୟ । ସେଥିରୁ ଗୋଟିଏ ରାଜହଂସ ଟିକେ ବୟସ୍କ ଓ ଅନ୍ୟଟି କମ୍ ବୟସ୍କ । ବୟସ୍କ ରାଜହଂସଟିକୁ ସମସ୍ତେ ରାଜା ରୂପେ ମାନି ଥାନ୍ତି । ତା'ର ବୁଦ୍ଧି ବିଚାର ସବୁ ପକ୍ଷୀଙ୍କ ଠାରୁ ଉନ୍ନତ । ସେ ଭାବିଚିନ୍ତି ସମସ୍ତଙ୍କୁ ପରାମର୍ଶ ଦିଏ ।

ଥରେ କେଉଁଠୁ ଗୋଟିଏ ବାନର ଆସି ସେହି ଇଲାକାରେ ପହଞ୍ଚିଲା । ସେହି ବାନରଟି ନିଜକୁ ବେଶ୍ ବଳଶାଳୀ ବୋଲି ପ୍ରମାଣ କରିବାକୁ ଉଦ୍ୟମ କରିବାରେ ଲାଗିଲା । ସେ ଭାବିଲା ଏଇ ସାମାନ୍ୟ ପକ୍ଷୀଗୁଡ଼ାକ ଅତି ଦୁର୍ବଳ । କ'ଣ ବା ଖାଇ ପାରନ୍ତି ସେମାନେ । ଉଡ଼ିଉଡ଼ି ଯାଇ ଥଣ୍ଟରେ ସାମାନ୍ୟ ଆହାର ଧରି ଆସିବେ । ସେଇଆକୁ ଖାଇ ରହିବେ । ସିଏ ନିଜେ ମନଇଚ୍ଛା କେତେ ଦରବ ଏକାଠି ଖାଇ ଦେଇପାରୁଛି । କେଡ଼େ ଜୋର୍‌ରେ ଡେଇଁ ପାରୁଛି । ଏହିପରି କଥା ପାଞ୍ଚି ମନ ଖୁସିରେ ଡିଆଁକୁଦା ମାରିଲା । ତା'ର ବଳ ଦେଖି ପକ୍ଷୀମାନେ ତାକୁ ଭୟ କରନ୍ତୁ, ତାକୁ ମାନନ୍ତୁ, ଏହିପରି ଉଦ୍ଦେଶ୍ୟ ସେ ରଖିଥିଲା । ଡିଆଁକୁଦା



Digitized by srujanika@gmail.com

ମାଗିବା ଧୀରେଧୀରେ ତା'ର ଏତେ ବଢ଼ିଗଲା ଯେ କେଉଁ ପକ୍ଷୀର ବସା ଭାଙ୍ଗିଗଲା । ଆଉ କାହାର ଅଣ୍ଡା ତାଙ୍କ ବସାରୁ ଖସି ପଡ଼ି ଭାଙ୍ଗିଗଲା, କେଉଁ ପକ୍ଷୀର ଛୁଆ ଯେଉଁମାନେ ଉଡ଼ିବାରେ ସକ୍ଷମ ହୋଇ ନଥିଲେ ସେମାନେ କଷ୍ଟରେ ଚିତ୍କାର କଲେ । ବାନରର ସେଥିରେ ଯାଏଆସେ ନାହିଁ । ସେ ତ ନିଜକୁ ବଳୁଆ ବୋଲି ପ୍ରମାଣ କରିବା ଦରକାର । କାହାର ଲାଭ ହେଲା କି କ୍ଷତି ହେଲା ସେ କାହିଁକି ସେ ଚିନ୍ତା କରିବ ? ପ୍ରଥମେ ପକ୍ଷୀମାନେ ସେହି ବାନରକୁ ଏପରି ଉପଦ୍ରବ ନ କରିବା ପାଇଁ କହିଲେ । ତା'ପରେ ତାକୁ ଗାଳି ଦେଲେ । ସେ କିଛିହେଲେ ଶୁଣିଲା ନାହିଁ । ପୂର୍ବପରି ଦୁଷ୍ଟାମୀ କାଢ଼ିବାରେ ଲାଗି ପଡ଼ିଲା । ମୁହଁତୋଡ଼ କରି ଆହୁରି ଜବାବ ଦେଲା କ'ଣ ନା, "ମୋର ଯାହା ଇଚ୍ଛା ମୁଁ ତାହା କରିବି । ତମେମାନେ ମୋର କ'ଣ କରିପାରିବ ? କିଛି ହେଲେ କରିପାରିବ ନାହିଁ ।" ପକ୍ଷୀମାନେ ମିଶି ସେମାନଙ୍କର ରାଜା ରାଜହଂସ ନିକଟରେ ଫେରାଦ ହେଲେ । ପକ୍ଷୀ ହେଲେ ମଧ୍ୟ ସେମାନଙ୍କର ଶୃଙ୍ଖଳା ରହିଥିଲା । ରାଜାଙ୍କ ପ୍ରତି ସମ୍ମାନ ଥିଲା । ଯାହା କରୁଥିଲେ ତାଙ୍କୁ ପଚାରି କରୁଥିଲେ ।

ରାଜହଂସ ପ୍ରଥମେ ବାନରଟିକୁ ସତର୍କ କରିଦେବା ପାଇଁ ପକ୍ଷୀମାନଙ୍କୁ ପରାମର୍ଶ ଦେଲା । ତା' କଥା ମାନି ସେମାନେ ତାକୁ ସତର୍କ କରାଇ ଦେଇ କହିଲେ, "ଯଦି ଏହିପରି ଦୁଷ୍ଟବୁଦ୍ଧି କରିବୁ ତେବେ ତୋତେ ଏଠାରୁ ବିତାଡ଼ିତ କରାଯିବ ।" ବାନରଟି ସେମାନଙ୍କ କଥାକୁ ହସରେ ଉଡ଼ାଇ ଦେଲା । ପକ୍ଷୀମାନେ ନିରାଶ ହୋଇ ରାଜହଂସକୁ ଏକଥା ଜଣାଇଲେ । ଏଥର ରାଜହଂସ ରାଜା ବାନର ଉପରେ ରାଗିଗଲା । ଅଯଥାରେ ତାଙ୍କ ଅଞ୍ଚଳରେ ଅଶାନ୍ତି ସୃଷ୍ଟି କରୁଛି ଦୁଷ୍ଟ ବାନରଟା । ଉପଦ୍ରବ କରି ତା'ର ପ୍ରଜାମାନଙ୍କୁ ଅସୁବିଧାରେ ପକାଉଛି । ଇଏ କମ୍ କଥା ନୁହେଁ । ସେ ପକ୍ଷୀମାନଙ୍କୁ ଆଦେଶ ଦେଲେ ସମସ୍ତେ ମିଳିତ ଭାବରେ ତାକୁ ଆକ୍ରମଣ କରନ୍ତୁ । ଗୋଡ଼େଇ ଗୋଡ଼େଇ ଅନେକ ବାଟ ନେଇଯାଇ ତାକୁ ବିତାଡ଼ିତ କରିଦିଅନ୍ତୁ । ସତକୁ ସତ ପକ୍ଷୀମାନେ ଏଥର ବାନର ଉପରେ ମିଳିତ ଭାବରେ ଚଢ଼ାଉ କରିଦେଲେ । ତାଙ୍କର ମୁନିଆ ଥଣ୍ଟରେ ଖୁମ୍ପିବାରେ ଲାଗିଲେ ।



Digitized by srujanika@gmail.com



ମାଙ୍କଡ଼ଟି ପ୍ରାଣ ବିକଳରେ ଡେଇଁ ଡେଇଁ ପଳାଇ ଗଲା । ପକ୍ଷୀଗୁଡ଼ିକ ତାକୁ ଗୋଡ଼େଇ ଗୋଡ଼େଇ ଆକ୍ରମଣ କରୁଥାନ୍ତି । ସେ ପ୍ରାଣକୁ ବଞ୍ଚାଇବାକୁ ଚେଷ୍ଟାକରି ଡେଇଁ ଡେଇଁ ବହୁ ଦୂର ଚାଲିଗଲା ପରେ ପକ୍ଷୀମାନେ ଫେରି ଆସିଲେ । ସମସ୍ତେ ଆନନ୍ଦରେ କଲରୋଳ କରି ବନଭୂମିକୁ ମୁଖରିତ କରିଦେଲେ । ରାଜହଂସ ନିକଟରେ ବାନର ବିଷୟରେ ଜଣାଇଲେ । ସେ କିପରି ଛାନିଆରେ ଡେଇଁ ଡେଇଁ ପଳାଉ ଥିଲା ତା'ର ବର୍ଣ୍ଣନା କରି କହିଲେ । ଏବେ ସେ ରାଜା ରାଜହଂସ ପକ୍ଷୀମାନଙ୍କୁ ପ୍ରଶଂସା କଲେ । ସମସ୍ତେ ଶାନ୍ତିରେ ରହିଲେ । ପକ୍ଷୀମାନଙ୍କ ଆନନ୍ଦରେ ରାଜା ଆନନ୍ଦ ପ୍ରକାଶ କଲେ । ସେମାନଙ୍କ ଅଞ୍ଚଳର ପୂର୍ବାବସ୍ଥା ଫେରି ଆସିଲା ।





Digitized by srujanika@gmail.com

## ସେବାର ମୂଲ୍ୟ

ଉଦୟପୁରର ଜଣେ ଜମିଦାର ଥିଲେ । ସେ ଭାରି ଉଦାର ପ୍ରକୃତିର ଥିଲେ । ନିଜର ପ୍ରଜାମାନଙ୍କୁ ସେ ସନ୍ତାନ ପରି ମନେ କରୁଥିଲେ । ସାଧୁସନ୍ଥଙ୍କ ପ୍ରତି ତାଙ୍କର ଭକ୍ତି, ଶ୍ରଦ୍ଧା ରହିଥିଲା । ପରୋପକାରୀ ବ୍ୟକ୍ତି ଭାବରେ ସେ ସୁନାମ ଅର୍ଜନ କରିଥିଲେ । ତାଙ୍କର ପତ୍ନୀ ମଧ୍ୟ ତାଙ୍କପରି ସତ୍ ହୃଦୟର ରମଣୀ ଥିଲେ । ଦୁହେଁ ଧର୍ମମାର୍ଗରେ ରହି ଜୀବନ ଅତିବାହିତ କରୁଥିଲେ । ସେମାନଙ୍କର ଗୋଟିଏ ପୁଅ ଥିଲା । ତା'ର ନାମ ଜୟସେନ । ଜୟସେନ ଛୋଟ ଥିବା ବେଳେ ତା'ର ଦୁର୍ଭାଗ୍ୟରୁ ପିତାମାତାଙ୍କର ଅକାଳ ବିୟୋଗ ଘଟିଲା । ତା'ର ପିତାଙ୍କ ସାନଭାଇ ଜମିଦାରୀ ବୁଝାସୁଝା କରିବା ବାହାନାରେ ସବୁତକ ସମ୍ପତ୍ତି ନିଜ ନାମରେ କରାଇ





Digitized by srujanika@gmail.com



ନେଲା । ଜୟସେନ ଏକଥା ବୁଝିବା ବୟସରେ ହୋଇ ନଥିଲା । କିଛି କରିବାର କ୍ଷମତା ତା'ର ଆସି ନଥିଲା । ସେହି କକା ଜୟସେନକୁ ଯାହା ଖାଇବା ପିନ୍ଧିବାକୁ ସାଧାରଣ ଭାବରେ ଦେଉଥିଲା ଏବଂ ତାହା ବଦଳରେ ବିଭିନ୍ନ କାର୍ଯ୍ୟରେ ତାକୁ ନିୟୋଜିତ କରୁଥିଲା ।

କ୍ରମଶଃ ଜୟସେନର ବୟସ ବଢ଼ିବାରୁ ସେ ସବୁକଥା ବୁଝି ପାରିଲା । ସେ ଅଞ୍ଚଳର ଲୋକମାନଙ୍କର ତା' ପ୍ରତି ଆଦର ଥିଲା । ସେମାନେ ତା' ବାପାଙ୍କ କଥା ମନେପକାଇ ମନୁଦୁଃଖ କରୁଥିଲେ । କିନ୍ତୁ କିଛି କରିପାରୁ ନଥିଲେ । ଜୟସେନ ଖୁବ୍ ପରୋପକାରୀ ଥିଲା । ଥରେ ଏକ ପୁଷ୍କରିଣୀରେ ଜଣେ ସାଧୁ ସ୍ନାନ କରିବା ସମୟରେ ଅଚେତ ହୋଇଗଲେ । ସେ ପାଣିରେ ପଡ଼ିଯିବା ବେଳେ ଦୈବାତ୍ ଜୟସେନର ନଜରରେ ପଡ଼ିଲା । ତତ୍କ୍ଷଣାତ୍ ସାଧୁଙ୍କୁ ପାଣିରୁ ଉଠାଇ ବାହାରକୁ ନେଇ ଆସିଲା । ଜୟସେନ ତାଙ୍କୁ ନିଜର ଗୃହକୁ ନେଇ ଚିକିତ୍ସା କଲା । ସାଧୁ ସାଷ୍ଟାମ ହେଲେ । ସେ ଗଲାବେଳେ ଜୟସେନକୁ ଆଶୀର୍ବାଦ କରି କହିଲେ, "ତୁ ଭବିଷ୍ୟତରେ ଜଣେ ରାଜା ହେବୁ ।" ଏତିକି କହି ଦଣ୍ଡ କମଣ୍ଡଳୁ ଧରି ନିଜ ପଥରେ ଚାଲିଗଲେ ।



Digitized by srujanika@gmail.com

ସର୍ବଦା କାର୍ଯ୍ୟବ୍ୟସ୍ତ ରହି ଜୟସେନ ସାଧୁଙ୍କ କଥା ପାଶୋରି ଯାଇଥିଲା । ତା'ପରେ ସେ କୌଣସି ଆଶା ନ ରଖି ତାଙ୍କର ସେବାଶୁଶ୍ରୂଷା କରିଥିଲା । ଯେକୌଣସି ବ୍ୟକ୍ତିର ଉପକାର କଲେ ମଧ୍ୟ ତାହା ଠାରୁ ଲାଭର ଆଶା କେବେହେଲେ ସେ କରୁ ନଥିଲା । ତା'ର ଖଳ ପ୍ରକୃତିର କକାଟି ତାକୁ କେତେ ପରିଶ୍ରମ କରାଉ ଥିଲା । ଜୟସେନ ବିନା ଦ୍ୱିଧାରେ ହସହସ ମୁଖରେ ସବୁ କାମ କରିଯାଉଥିଲା ।

ଥରେ ଉଦୟପୁର ରାଜାଙ୍କର ଅକାଳ ଦେହାନ୍ତ ହୋଇଗଲା । ତାଙ୍କର କୌଣସି ସନ୍ତାନ ହୋଇ ନଥିଲେ । ମନ୍ତ୍ରୀ, ସେନାପତି, ରାଜପୁରୋହିତମାନଙ୍କ ଭିତରେ ଭାଲେଣି ପଡ଼ିଲା । ରାଜ୍ୟର ଭାର ସମ୍ଭାଳିବ କିଏ ? ସମସ୍ତେ ମିଳିତ ଭାବରେ ଆଲୋଚନା କଲେ । ଆଲୋଚନାରେ ସ୍ଥିର ହେଲା ଯେ ରାଜାଙ୍କର ପ୍ରିୟ ହାତୀଟି ସପ୍ତାହେ ବୁଲିବ । ସେ ଯାହା ମଥାରେ ତା' ଶୁଣ୍ଢରେ ଥିବା ସୁନାକଳସରୁ ପାଣି ଢାଳିବେ ସେ ହିଁ ରାଜା ହେବ । ରାଜାଙ୍କର ପାଟହାତୀକୁ ସଜବାଜ କରାଯାଇ ଚାରିଆଡ଼େ ବୁଲା ହେଲା । ପାଞ୍ଚଦିନ କାଳ ବୁଲିଲା ପରେ ସେ କାହାରି ମୁଣ୍ଡରେ ପାଣି ଢାଳୁ ନଥାଏ । ରାଜକର୍ମଚାରୀଙ୍କ ମନରେ ନୈରାଶ୍ୟ ଖେଳି ଯାଉଥାଏ । ଏ ହାତୀ କ'ଣ କାହା ମଥାରେ ପାଣି ଢାଳିବ ନାହିଁ ନା କ'ଣ ? ରାଜା ହେବାର





Digitized by srujanika@gmail.com

ଯୋଗ୍ୟ ବୋଲି ସେ କାହାକୁ ଭାବୁ ନାହିଁ କାହିଁକି ? ରାଜ୍ୟର ଅବସ୍ଥା କ'ଣ ହେବ ? ଇତ୍ୟାଦି । ବିଭିନ୍ନ ଭାବନା ସେମାନଙ୍କ ମନରେ ସୃଷ୍ଟି ହେଉଥାଏ ।

ସପ୍ତମ ଦିବସ ଉପସ୍ଥିତ ହେଲା । ହାତୀଟିର ରାଜା ନିର୍ବାଚନ କରିବାର ଶେଷ ଦିବସ । ସେ ବୁଲୁଥାଏ । ଜଣେ ବୃଦ୍ଧ କାଠୁରିଆ ବାରମ୍ବାର ଚେଷ୍ଟାକରି କାଠଭାରଟି ମଥା ଉପରକୁ ଟେକି ପାରୁ ନଥିବା ସମୟରେ ଜୟସେନ ସେହି ବାଟ ଦେଇ ଯାଉଥିଲା । ସେ କାଠଭାରଟି ନିଜ ମଥା ଉପରକୁ ଉଠାଇ କାଠୁରିଆ ସହିତ କିଛି ବାଟ ଆସିଲା । ବୃଦ୍ଧଟି ବାଧ୍ୟକରି ନିଜ ମଥାକୁ କାଠ ବୋଝଟି ଦେଇଦେବା ଲାଗି କହିବାରୁ ଜୟସେନ ତାଙ୍କୁ ଦେଲା । ସେ ବହୁ ଆଶୀର୍ବାଦ କରି ନିଜ ବାଟରେ ଗଲେ । ଜୟସେନ ଘରକୁ ଫେରୁଥାଏ । ଏହି ସମୟରେ ହାତୀଟି ଆସୁଥାଏ । ହାତୀଟି ତା' ଶୁଣ୍ଢରେ ଥିବା ସୁନାକଳସୀର ପାଣିକୁ ଜୟସେନ ମଥାରେ ଢାଳି ଦେଲା । ଉପସ୍ଥିତ ରାଜକର୍ମଚାରୀଗଣ ଆନନ୍ଦରେ ହର୍ଷଧ୍ୱନି କଲେ । ଏହି ସମ୍ବାଦ ଚାରିଆଡ଼େ ଖେଳିଗଲା । ରାଜକର୍ମଚାରୀମାନେ ଜୟସେନକୁ ହାତୀପୃଷ୍ଠରେ ବସାଇ ରାଜନବରକୁ ନେଲେ । ରାଣୀ ଜୟସେନକୁ ଦେଖି ଆନନ୍ଦରେ ନିଜ ପୁତ୍ର ମନେକରି ଆଶୀର୍ବାଦ ଦେଲେ । ରାଜ୍ୟ ଜଣେ ଆଦର୍ଶ ରାଜା ପାଇଲା ।





Digitized by srujanika@gmail.com

# ପ୍ରହରୀର ଆଶଙ୍କା

କାହିଁ କେତେ ବର୍ଷ ବିତି ଗଲାଣି । ଉଦୟ ପ୍ରତାପ ନାମରେ ଜଣେ ରାଜା ରାଜୁତି କରୁଥାନ୍ତି । ପ୍ରଜାମାନେ ତାଙ୍କ ଅତ୍ୟାଚାରରେ ବ୍ୟସ୍ତ ହୋଇଉଠିଥାନ୍ତି । ସାମାନ୍ୟ କଥାରେ ରାଜାଙ୍କର କ୍ରୋଧ, କିଛି କଥା ନ ଥିଲେ ମଧ୍ୟ ପ୍ରଜାଙ୍କୁ ଗାଳି କରିବା, ଭୁଲ୍ ହୋଇଛି ଭାବି ଦଣ୍ଡଦେବା ତାଙ୍କର ଅଭ୍ୟାସ । ତା' ସହିତ ତାଙ୍କର ନିଷ୍ଠୁର ପ୍ରକୃତି । କାହାକୁ କଷ୍ଟ ଦେବାରେ ସେ ଆନନ୍ଦ ପାଆନ୍ତି । ଯେଉଁ କର୍ମଚାରୀ ତାଙ୍କର ଭଲ ହୋଇ ରହିବାକୁ ଇଚ୍ଛା କରନ୍ତି ସେମାନେ ନିରୀହ ପ୍ରଜାଙ୍କୁ ବିନା ଦୋଷରେ ଧରିଆଣି ତାଙ୍କ ନିକଟରେ ହାଜର କରାନ୍ତି । କିଛି ଦୋଷ କରି ନଥିଲେ ବି କ'ଣ ଗୋଟେ ଦୋଷ ଦର୍ଶାଇ ବନେଇଚୁନେଇ ରାଜାଙ୍କୁ କହନ୍ତି । ରାଜା କର୍ମଚାରୀକୁ ଆଦେଶ ଦିଅନ୍ତି । ତାକୁ ଗଛରେ ବାନ୍ଧି ପକାଅ, ଚାବୁକରେ ପିଟ, ଖୁଣ୍ଟରେ ବାନ୍ଧି ପ୍ରହାର କର ଇତ୍ୟାଦି । ରାଜାଙ୍କ କଥା ଅନୁସାରେ କର୍ମଚାରୀ ନିରୀହ ଲୋକଟିକୁ ଦଣ୍ଡଦେବାରେ ଲାଗିପଡ଼େ । ଏଥିରେ ରାଜା ଓ କର୍ମଚାରୀ





Digitized by srujanika@gmail.com



ଭାରି ଆନନ୍ଦିତ ହୁଅନ୍ତି । ଯେଉଁମାନେ ନିଷ୍ଠୁର ସ୍ୱଭାବର କର୍ମଚାରୀ ସେମାନେ ସିନା ଏ ପ୍ରକାର କାର୍ଯ୍ୟରେ ଖୁସି ପାଆନ୍ତି । ରାଜାଙ୍କର ପ୍ରିୟ ହୋଇ ରହିବାକୁ ଚେଷ୍ଟା କରନ୍ତି । ହେଲେ ସମସ୍ତ କର୍ମଚାରୀ ସେପରି କାର୍ଯ୍ୟ କରିବାକୁ ଭଲପାଆନ୍ତି ନାହିଁ । ଯେଉଁମାନେ ଉତ୍ତମ ସ୍ୱଭାବର, ଦୟାଳୁ ପ୍ରକୃତିର ସେମାନେ ଏପରି କାର୍ଯ୍ୟରେ ବହୁତ ଦୁଃଖୀ ହୁଅନ୍ତି । ରାଜା ତାଙ୍କୁ ଭଲପାଆନ୍ତୁ କି ନ ପାଆନ୍ତୁ ସେମାନେ କିନ୍ତୁ ଏହିପରି ନିଷ୍ଠୁର ଆଚରଣ କରିପାରନ୍ତି ନାହିଁ କିମ୍ବା ମିଛ ସତ ବର୍ଣ୍ଣନା କରି ରାଜାଙ୍କ ନିକଟରେ ବର୍ଣ୍ଣନା କରି ପ୍ରଜାଙ୍କୁ ଦଣ୍ଡିତ କରିବାର ଚେଷ୍ଟା କରନ୍ତି ନାହିଁ ।

ରାଣୀ ପ୍ରଭାବତୀ ରାଜାଙ୍କର ଏହି ନିଷ୍ଠୁରତାକୁ ଆଦୌ ସମର୍ଥନ କରନ୍ତି ନାହିଁ । ସେ ଭାରି ଦୟାଶୀଳା । କେବେକେବେ ମନ୍ଦିରକୁ ଦେବ ଦର୍ଶନ କରିବାକୁ ଗଲାବେଳେ ଯେଉଁ ପ୍ରଜା ତାଙ୍କ ଆଖି ଆଗରେ ପଡ଼ନ୍ତି ସେ ତା' ସହିତ କୋମଳ ଭାବରେ କଥାବାର୍ତ୍ତା କରନ୍ତି । ତାଙ୍କ ଭଲମନ୍ଦ ପଚାରନ୍ତି । ଯେଉଁ ରାଜକର୍ମଚାରୀ ରାଣୀଙ୍କ ସହିତ ଯାଇଥାନ୍ତି ସେମାନେ ଏକଥା ଆସି ରାଜାଙ୍କୁ ଜଣାଇ ଦେଲେ



Digitized by srujanika@gmail.com

ରାଜା ରାଣୀଙ୍କ ଉପରେ ରାଗି ଉଠନ୍ତି । ରାଣୀ ରାଜାଙ୍କ କଥାରେ ଉତ୍ତର ଦିଅନ୍ତି ନାହିଁ । ପ୍ରଜାମାନଙ୍କୁ ସେହିପରି ସ୍ନେହ କରନ୍ତି ।

ରାଜା ଉଦୟ ପ୍ରତାପଙ୍କର ଗୋଟିଏ ପୁଅ ଥିଲା । ପୁଅଟି ରାଣୀଙ୍କ ସ୍ୱଭାବର ହୋଇଥିଲା । ରାଜପୁତ୍ରଙ୍କର ପ୍ରକୃତି ରାଜାଙ୍କ ପରି ହୋଇ ନଥିବାରୁ ରାଜା ମନେମନେ ପୁଅ ଉପରେ ରାଗି ଉଠୁଥିଲେ । ତଥାପି ପୁତ୍ରମୋହ ହେତୁ କିଛି କହିପାରୁ ନଥିଲେ । ଭାବୁଥିଲେ ବଡ଼ ହେଲେ ତାଙ୍କ ପାଖରୁ ରାଜ୍ୟ ଶାସନ କରିବା ଆପେଆପେ ଶିଖିଯିବ । ରାଜପୁତ୍ର ଯେତେ ବଡ଼ ହେଉଥିଲେ ପିତାଙ୍କ ଅପେକ୍ଷା ମାତାଙ୍କ ପ୍ରଭାବ ତାଙ୍କ ଚରିତ୍ରରେ, ପ୍ରକୃତିରେ ଅଧିକ ପ୍ରକାଶିତ ହେଉଥିଲା । ତେଣୁ ପ୍ରଜାକୁଳ ରାଜାପୁତ୍ରଙ୍କୁ ଭାରି ଭଲପାଉ ଥିଲେ ।

ହଠାତ୍ ରାଜା ଉଦୟ ପ୍ରତାପଙ୍କର ଦେହାନ୍ତ ହୋଇଗଲା । ରାଜ୍ୟର ପ୍ରଜାମାନେ ଏହି ସମ୍ବାଦ ଶୁଣି ଦୁଃଖିତ ହେଲେ ନାହିଁ । କିନ୍ତୁ ଦୁଃଖିତ ହେଲେ ନାହିଁ ବୋଲି ବାହାରକୁ ପ୍ରକାଶ କଲେନାହିଁ । ସେମାନେ ମନ ଭିତରେ ଆନନ୍ଦ ଅନୁଭବ କରୁଥିଲେ ଯେ ରାଜପୁତ୍ର ଏବେ ତାଙ୍କର ରାଜା ହେବେ । ସତକୁ ସତ ରାଜପୁତ୍ର ପିତାଙ୍କର ଅନ୍ତିମ ସଂସ୍କାର, ଶୁଦ୍ଧିକ୍ରିୟା ଇତ୍ୟାଦି ଶେଷ କରିବା ପରେ ସିଂହାସନରେ





Digitized by srujanika@gmail.com

ବସିଲେ । ଘରିଆଡ଼େ ତୋରଣ ସଜାଇ ଦିଆଗଲା । ସେ ଶୋଭାଯାତ୍ରାରେ ଚାଲି ଚାଲି ଅଭିନନ୍ଦନ ଗ୍ରହଣ କରୁଥାନ୍ତି । ପାତ୍ରମନ୍ତ୍ରୀ ପ୍ରଜା ତାଙ୍କୁ ଅଭିନନ୍ଦନ ଜଣାଇଲେ । କୁଳନାରୀମାନେ ରାସ୍ତାରେ ଫୁଲ ପକାଇଲେ । ଶଙ୍ଖ ବଜାଇଲେ, ହୁଳହୁଳି ଦେଲେ । ଯେଉଁ ରାଜକର୍ମଚାରୀମାନେ ରାଜା ଉଦୟ ପ୍ରତାପଙ୍କ ପ୍ରିୟ ଥିଲେ ସେମାନେ ମନରେ ପ୍ରମାଦ ଗଣିଲେ । ତାଙ୍କୁ ଭୟ ଗ୍ରାସ କଲା । ସବୁଠାରୁ ବେଶି ଭୟ ରହିଲା ଦ୍ୱାର ରକ୍ଷକ ପ୍ରହରୀର । ରାଜାଙ୍କ ସମୟରେ ସେ କେତେ ଅନ୍ୟାୟ ଅତ୍ୟାଚାର କରିଛି ପ୍ରଜାମାନେ ତ ଜାଣନ୍ତି । ରାଜପୁତ୍ର ମଧ୍ୟ ନିଜେ ଆଖି ଆଗରେ ଦେଖିଛନ୍ତି । ସେ ନିଶ୍ଚୟ ତାକୁ କାର୍ଯ୍ୟରୁ ଅନ୍ତର କରିଦେବେ ଏହି ଆଶଙ୍କାରେ ସେ ଛଟପଟ ହେବାରେ ଲାଗିଲା । ରାଜପୁତ୍ର ଯେତେବେଳେ ତା' ନିକଟରେ ଦେଇ ଯିବାକୁ ଆସୁଥାନ୍ତି ସେ ଭୟରେ ଥରୁଥାଏ । ରାଜପୁତ୍ର ବା ନୂତନ ରାଜା ତା' ପାଖକୁ ଆସି ତାକୁ ଚାହିଁଲେ । ଦେଖିଲେ ସେ ତାଙ୍କୁ ନ ଚାହିଁ ମୁଣ୍ଡ ତଳକୁ କରି ଠିଆ ହୋଇଛି ଓ ଭୟରେ ଥରୁଛି । ରାଜା ତାକୁ ପଚାରିଲେ, 'ତମର କ'ଣ ହୋଇଛି ମୁଁ ରାଜା ହେବାରେ କ'ଣ ତୁମେ ଆନନ୍ଦିତ ନୁହଁ ?" ପ୍ରହରୀଟି ଥରିଥରି ତାଙ୍କ ପାଦତଳେ ପଡ଼ିଗଲା । କହିଲା, 'ମୁଁ ଆନନ୍ଦିତ ହଜୁର, ହେଲେ ମୋର ପୂର୍ବର କାର୍ଯ୍ୟକଳାପ ଅନୁସାରେ ଆପଣ କାଳେ ମୋତେ ବାହାର କରିଦେବେ ସେଇ ଭୟ ମୋତେ ଅସ୍ଥିର କରୁଛି । ମୋ ଜୀବିକା ହରାଇବାର ଆଶଙ୍କାରେ ମୁଁ ଭୟଭୀତ ହୋଇଯାଇଛି ।" ରାଜା ତାକୁ ଆଶ୍ୱାସନା ଦେଲେ । ପ୍ରଜାଙ୍କୁ ଅଯଥାରେ ବିନା ଦୋଷରେ ଦଣ୍ଡ ଦେବ ନାହିଁ ବୋଲି ବୁଝାଇ ଦେଲେ । ରାଜା କହିଲେ, ପ୍ରଜାଙ୍କୁ ଭଲ ବ୍ୟବହାର କଲେ ଚାକିରି ପ୍ରତି ବିପଦ ରହିବ ନାହିଁ । ବର୍ତ୍ତମାନ ସେ ନିଶ୍ଚିନ୍ତ ରହିପାରେ । ପ୍ରହରୀର ଆଶଙ୍କା ଦୂର ହେଲା । ତା' ମୁହଁରେ ହସ ଫୁଟି ଉଠିଲା । ସେ ହସହସ ମୁହଁରେ ନୂତନ ରାଜାଙ୍କୁ ଅଭିନନ୍ଦନ ଜଣାଇଲା । ରାଜା ଆଗକୁ ଆଗେଇଲେ ।





Digitized by srujanika@gmail.com

# ବଗୁଲୀର ଯାତ୍ରାଦେଖା

ବ୍ରଜବାବୁଙ୍କର ଗୋଟିଏ ବୋଲି ଝିଅ । ତା' ରଙ୍ଗ ଭାରି ସଫା । ସେଇଥିପାଇଁ ସେ ଛୋଟବେଳେ ତାକୁ ବଗୁଲୀ ଡାକୁଥିଲେ । ଗେଲବସରରେ ବଗୁଲୀ ଡାକୁଡାକୁ ସତରେ ତାକୁ ସମସ୍ତେ ବଗୁଲୀ ଡାକିଲେ । ସେଇ ବଗୁଲୀ ନାଆଁଟା ତା'ର ରହିଗଲା । ଆଠ ବରଷର ଝିଅ ହେଲାଣି । ଅଧିକ ଆଦର ପାଇ ଟିକେ ଜିଦିଆ ହୋଇଯାଇଛି । ଟିକିଏ ଟିକିଏ କଥାରେ ନ ଖାଇ ରୁଷିଯିବ ଯେ ବାପ ମାଆ ଦୁଇଜଣ ବୁଝାଇ ବୁଝାଇ ଥକିଯିବେ । ଯାହା ଜିନିଷ ଆଣିବାକୁ କହିବ ସାଙ୍ଗେସାଙ୍ଗେ ଆଣି ନଦେଲେ ଅଝଟ କରିବ । କାନ୍ଦିକାନ୍ଦି ଅସ୍ଥିର ହୋଇଯିବ । ରାଗିକରି ଗୋଡ଼ କଉଡ଼ିବ । ଗୋଟିଏ ଛୁଆକୁ ରାଗିବାକୁ ହାତ





Digitized by srujanika@gmail.com



ଉଠାଇବାକୁ ବାପା ମାଆଙ୍କର ସାହସ ହୁଏନି । ତେଣୁ ବଗୁଲୀର ଜିଦି ସେମିତି ବଢ଼ିଚାଲିଥାଏ ।

ବାଲିଯାତ୍ରା ସମୟ । ବଗୁଲୀକୁ ଧରି ବାପାମାଆ ଯାତ୍ରାରେ ବୁଲିବାକୁ ଯିବାର ଥିଲା । ଆଜି ବଗୁଲୀର ମନ ମହାଆନନ୍ଦ । ସେ ବିଦ୍ୟାଳୟରୁ ଆସି କେମିତି ଚଞ୍ଚଳ ଘରେ ପହଞ୍ଚିବ ତାକୁ ତର ସହିଲା ନାହିଁ । କାରଣ ସକାଳୁ ଯାତ୍ରା ଦେଖିଯିବାକୁ ଯୋଜନା ହୋଇଥିଲା । ବ୍ରଜବାବୁ ତାଙ୍କର ପତ୍ନୀ ଓ ଝିଅ ଦୁହିଁଙ୍କୁ କହି ଦେଇଥିଲେ ଯେ ସେମାନେ ପ୍ରସ୍ତୁତ ହୋଇ ରହିଥିବେ । ସେ ଅଫିସ୍‌ରୁ ଫେରିଲା ପରେ ସାଙ୍ଗ ହୋଇ ବାହାରିବେ । ବଗୁଲି ବିଦ୍ୟାଳୟରୁ ଫେରି ଶୀଘ୍ର ଶୀଘ୍ର ପୋଷାକପତ୍ର ପିନ୍ଧି ବାଲିଯାତ୍ରା ବୁଲିଯିବା ପାଇଁ ତିଆରି ହୋଇ ରହିଥିଲା, ମାଆଙ୍କୁ ଖାଲି ତରତର କରୁଥିଲା । ମାଆ ପ୍ରସ୍ତୁତ ହେବା ଭିତରେ ବାପା ପହଞ୍ଚିଗଲେ ଓ ତିନିଜଣ ମିଶି ବାହାରିଲେ ।



Digitized by srujanika@gmail.com

ଯାତ୍ରା ପାଖରେ ପହଞ୍ଚିଗଲା ପରେ ବାପା ବଗୁଲୀକୁ ବାରମ୍ବାର କରି କହିଲେ ତାଙ୍କୁ ଛାଡ଼ି ସେ କୁଆଡ଼େ ହେଲେ ଯେମିତି ଏକୁଟିଆ ନ ଯାଏ, ନହେଲେ ଗହଳିରେ କୁଆଡ଼େ ହଜିଯିବ ମାଆ ବଗୁଲୀର ହାତକୁ ଜୋର୍ କରି ଧରିଥାନ୍ତି । ସେମାନେ ଆଗ ଚକ୍ରୀ ପାଖରେ ପହଞ୍ଚିଲେ । ସେଠାରେ ବଗୁଲୀ ଗୋଟିଏ ଘୋଡ଼ା ଉପରେ ବସି ଘୂରିଲା । ତା'ପରେ ଗଲେ ରାମ ଦୋଳି ନିକଟକୁ । ସେଠାରେ ବଗୁଲୀ ଏକୁଟିଆ ବସିଲେ ଡରିବ । ତେଣୁ ବାପାମାଆ ବଗୁଲୀ ତିନିଜଣ ଯାକ ଟିକେଟ କରି ରାମଦୋଳିରେ ବସିଲେ । ଦୋଳି ବହୁତ ଉଚ୍ଚକୁ ଯାଇ ଖସିଲାବେଳେ ବଗୁଲୀ ବାପାଙ୍କୁ ଜାବୁଡ଼ି କରି ଧରୁଥାଏ । ପାଟି କରୁଥାଏ । ରାମଦୋଳିରେ ବସିବା ସରିଲା । ତା'ପରେ ସେମାନେ ଘୁଙ୍ଗୁଣିପୁରୀ ଖାଇବାକୁ ଗଲେ । ବଗୁଲୀ ଦେଖିଲା କେତେ ପିଲା ବେଲୁନ ଧରି ଘରଲୋକଙ୍କ ସାଙ୍ଗରେ ଯାଉଛନ୍ତି । ବାପାଙ୍କୁ କହିଲା ଯେ ସେ ବେଲୁନ କିଣିବ । ବାପା କହିଲେ ଯେ ଆଗ ଖାଇବା ପିଇବା ସରିଗଲେ ତା'ପରେ ବେଲୁନ କିଣିଦେବେ । ବଗୁଲୀ କି ଥୟ ଧରେ ! ତା'ର ତ ମନ ଯାଇ ବେଲୁନ ପାଖରେ ରହିଚି । ତା' ଅଜା ଆଈ ଆସିଥିଲେ ଯେ ଗେହ୍ଲା ନାତୁଣୀକୁ ଶହେଟଙ୍କା ଯାତ୍ରାଖର୍ଚ୍ଚ ଦେଇଯାଇଥିଲେ । ଗୋଟିଏ ଛୋଟିଆ ମନିପର୍ସରେ ସେ ଟଙ୍କାକୁ ରଖି ସେ ଯାତ୍ରାକୁ ଯାଇଥାଏ । ମାଆ କେତେ କରି କହିଲେ ଯେ ଟଙ୍କା ତାଙ୍କ ପାଖରେ ଥାଉ । ବଗୁଲୀ ଖର୍ଚ୍ଚ କଲାବେଳେ ସେ ଦେଇଦେବେ । ବଗୁଲୀ ତାଙ୍କୁ ଟଙ୍କା ରଖିବାକୁ ଦେଲା ନାହିଁ । ନିଜ ପାଖରେ ପର୍ସ ରଖିଲା । ଏଣେ ବେଲୁନ କିଣିବାକୁ ତରତର । ମାଆଙ୍କ ହାତରୁ ଟାଣିହୋଇ ଖସି ଚାଲିଗଲା ବେଲୁନ କିଣିବ ବୋଲି । ମାଆ ବଡ଼ପାଟିକରି ଡାକି ତା'ଆଡ଼କୁ ଯିବା ଭିତରେ ସେ ଭିଡ଼ରେ ପଶିଗଲା କୁଆଡ଼େ । ବ୍ରଜବାବୁ ସ୍ତ୍ରୀଙ୍କର ପାଟି ଶୁଣି ପଛକୁ ଚାହିଁଲାବେଳକୁ ବଗୁଲୀ ନାହିଁ । ତାଙ୍କର ମୁଣ୍ଡ ଖରାପ । ସେ ଓ ତାଙ୍କ ସ୍ତ୍ରୀ ମିଶି ବେଲୁନ ବିକ୍ରି ସ୍ଥାନକୁ ଗଲେ । ବଗୁଲୀକୁ ପାଇଲେ ନାହିଁ । ବିକଳରେ ଲାଗିପଡ଼ି ଖୋଜିଲେ । ଏତେ ଗହଳିରେ ବଗୁଲୀ କୁଆଡ଼େଗଲା । କେତେ ସମୟ ଖୋଜାଖୋଜି ପରେ ସେମାନେ ପଡ଼ିଆର ସୂଚନା କେନ୍ଦ୍ର ନିକଟକୁ ଗଲେ ଦୁଃଖରେ ବଗୁଲୀ କଥା



Digitized by srujanika@gmail.com

ଜଣାଇଲେ । ସୂଚନାକେନ୍ଦ୍ରରେ ଲୋକେ ତାଙ୍କୁ ସେଠାରେ ଅପେକ୍ଷା କରିବାକୁ ବୁଝାଇ କହିଲେ । ପ୍ରାୟ ଦୁଇଘଣ୍ଟା ପରେ ଜଣେ ବୃଦ୍ଧ ବଗୁଲୀକୁ ଧରି ସେଠାରେ ଉପସ୍ଥିତ ହେଲେ । ବ୍ରଜବାବୁ ଓ ତାଙ୍କ ପତ୍ନୀ ଝିଅକୁ ଦେଖି କାନ୍ଦି ପକାଇଲେ । ବୃଦ୍ଧଙ୍କୁ ବହୁତ ଧନ୍ୟବାଦ ଦେଲେ । ସେ କହିଲେ ଯେ ଛୁଆଟି ଏକୁଟିଆ ଠିଆ ହୋଇ କାନ୍ଦୁଥିଲା । ବାପା ମାଆଙ୍କୁ ପାଉନାହିଁ କହୁଥିଲା । ସେଥିପାଇଁ ସେ ତାକୁ ସାନ୍ତ୍ୱନା ଦେଇ ଏଠାକୁ ନେଇଆସିଲେ । ବଗୁଲୀର ମନିପର୍ସ ତା ହାତରୁ ଖସି କୁଆଡ଼େ ପଡ଼ିଯାଇଥିଲା । ବେଲୁନ କିଣିବ କ'ଣ । ଓଲଟି ବାପା ମାଆଙ୍କଠୁ ଅଲଗା ହୋଇଗଲା । ସେଠାରୁ ସେମାନେ ସିଧାସଳଖ ଘରକୁ ଫେରିଆସିଲେ । ସେମାନଙ୍କର ମନ ଭୟରେ ଦୁଃଖରେ ଭାଙ୍ଗି ପଡ଼ୁଥିଲା । ବେଲୁନ କିଣିବା କଥା କିଏ ଆଉ ପଚାରେ ! କେମିତି ଘରେ ଯାଇ ତିନିଜଣ ପହଞ୍ଚିଯିବେ ସେଇ ଚିନ୍ତା । ଘରେ ପହଞ୍ଚିଗଲା ପରେ ବାପା ମାଆ ବଗୁଲୀକୁ କୋଳରେ ବସାଇ ବୁଝାଇଲେ ଚୁପ୍ କରାଇଲେ । ତା' ମନରୁ ଭୟ ଦୂର କରିବାପାଇଁ ଚେଷ୍ଟା କଲେ । ବଗୁଲୀ ଧୀର ସ୍ଥିର ହୋଇ ସେମାନଙ୍କ କଥା ଶୁଣିଲା । ଭାବୁଥିଲା ଯେ ଆଉ ଦିନେ ଏମିତି ଜିଦି, ଗଣ୍ଡଗୋଳ କରିବ ନାହିଁ । ବାପା ମାଆଙ୍କ କଥା ନ ମାନି ଆଜି କେତେ ଅସୁବିଧାରେ ପଡ଼ିଲା ।





Digitized by srujanika@gmail.com



# ଅରୁଣା ସାମନ୍ତରାୟ

ଶ୍ରୀମତୀ ଅରୁଣା ସାମନ୍ତରାୟ ବର୍ତ୍ତମାନ ସମୟର ଜଣେ ପ୍ରତିଭାମୟୀ ସାରସତ ସାଧିକା । ତାଙ୍କର ରଚନା ଗୁଡ଼ିକର ବିଶେଷତ୍ୱ ହେଉଛି ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏବଂ ଆବେଗମୟିତା । ଏଯାବତ୍ ତାଙ୍କର ଆଠଖଣ୍ଡି ପୁସ୍ତକ ପ୍ରକାଶିତ ହୋଇ ପାଠକୀୟ ଶ୍ରଦ୍ଧାଲାଭ କରିପାରିଛି । ତନ୍ମଧ୍ୟରେ ରହିଛି ଗୀତିକବିତା ପୁସ୍ତକ (ଆଧୁନିକ) 'ଗୀତି ନିର୍ଝର', ଭକ୍ତି ଭାବନା ଉପରେ ଆଧାରିତ ଗୀତି କବିତା ପୁସ୍ତକ 'ଭକ୍ତି ତରଙ୍ଗ', ଆଧୁନିକ ଓ ଭକ୍ତି କବିତା ମିଶ୍ରିତ ଗୀତି କବିତା ପୁସ୍ତକ 'ଭାବର ନଈରେ ପ୍ରୀତିର ଡ଼ଙ୍ଗା' ଆଧୁନିକ କବିତା ପୁସ୍ତକ 'ଲକ୍ଷେ ପଦ୍ମବନ', ଶିଶୁ କିଶୋର କବିତା ପୁସ୍ତକ 'ବେଲୁନ୍‌ବାଲା', ଶିଶୁ କିଶୋର ଗଳ୍ପ ପୁସ୍ତକ 'ଠେକୁଆର ଚତୁରତା', ଦୁଇଟି ଗଳ୍ପ ସଂକଳନ – 'ସୁନେଲି ସପ୍ନର ସମାଧି', 'ଶଙ୍ଖଧ୍ୱନି' ତାଙ୍କର ଗଳ୍ପ କବିତା, ଶିଶୁ ମାନଙ୍କ ଗପ ଓ କବିତା ବିଭିନ୍ନ ସମ୍ବାଦପତ୍ର, ପତ୍ରିକା ଇତ୍ୟାଦିରେ ପ୍ରକାଶିତ ହୋଇ ଆଦୃତ ହୋଇଛି । ସଂପ୍ରତି ପ୍ରକାଶ ପାଇବାକୁ ଯାଉଥିବା ଶିଶୁଗଳ୍ପ ସଂକଳନ 'ବଗୁଲୀର ଯାତ୍ରାଦେଖା' ଏକ ମନୋଜ୍ଞ ସଂକଳନ । ଗଳ୍ପ ଗୁଡ଼ିକ ଯେପରି ସହଜ ଓ ସରଳ ଭାବରେ ଅତି ନିଖୁଣ ଭାବରେ ଉପସ୍ଥାପନା କରାଯାଇଛି ତାହା ନିଶ୍ଚିତ ଭାବରେ ଶିଶୁ କିଶୋର ମାନଙ୍କୁ ପ୍ରଭାବିତ କରିବାରେ ସଫଳ ହୋଇପାରିବ ବୋଲି ମୋର ବିଶ୍ୱାସ । ଲେଖିକାଙ୍କର ଲେଖନୀ ସଦା ଚଞ୍ଚଳ ରହୁ ।

ପ୍ରକାଶକ